ଶ୍ରୀ ରଘୁନାଥ ଶ୍ରେଷ୍ଠରାୟ

ଶ୍ରୀ ରାଜକିଶୋର ପଟ୍ଟନାୟକ

ଶ୍ରୀ ବିନୋଦ ରାଉତରାୟ

ଅଧ୍ୟାପକ ଚିନ୍ତାମଣି ବେହେରା

ଅଧ୍ୟାପକ ପ୍ରାଣବନ୍ଧୁ କର

ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି

ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ

ଡକ୍ଟର ଶ୍ରୀକେଶ୍ୱରୀ ଦାଲବେହେରା

ଶ୍ରୀମତୀ ବନଜ ଦେବୀ

ଉଷାରାଣୀ ଦାସ

ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତି

କୁମାରୀ କ୍ଷୀରୋଦ୍ରା କାନୁନ୍‌ଗୋ

କୁମାରୀ ଦେବୀକା ରାଣୀ

ଶ୍ରୀ ସୁରେନ୍ଦ୍ରନାଥ ବିଦ୍ୟାଧର

ଶ୍ରୀ ଅନନ୍ତ ପଟ୍ଟନାୟକ

ଶ୍ରୀମତୀ ଉଷାରାଣୀ ପଣ୍ଡା

ଅଧ୍ୟାପକ ଗୋପାଳଚନ୍ଦ୍ର ମିଶ୍ର

ଶ୍ରୀ ଗୋପାଳ ଶ୍ରେଷ୍ଠରାୟ

ଶ୍ରୀ ମହେଶ୍ୱର ମୂଳିଅ

ଶ୍ରୀ ଜାନକୀ ଚରଣ ପାଣିଗ୍ରାହୀ

ଶ୍ରୀ ଗୋପାଳ କାନୁନ୍‌ଗୋ

ଅଧ୍ୟାପକ ଗୁରୁପ୍ରସାଦ ମହାନ୍ତି

ଅଧ୍ୟାପକ ବିଭୂଦତ୍ତ ମିଶ୍ର

ଏସ୍ ମଙ୍ଗରାଜ, ବି. ଏ.

ଶ୍ରୀମତୀ କୁନ୍ତଳା କୁମାରୀ ରାଉତରାୟ

ଶ୍ରୀ ଜେନାମଣି ନରେନ୍ଦ୍ରକୁମାର

ଶ୍ରୀ ଆଶୁତୋଷ ପ୍ରସାଦ ପଟ୍ଟନାୟକ

ଅଧ୍ୟାପକ ପଠାଣି ପଟ୍ଟନାୟକ

କୁମାରୀ ତୁଳସୀଦାସ

ଶ୍ରୀ ଦୁର୍ଗାମାଧବ ମିଶ୍ର

*
* *

ଲେଖାକିର ଶିଳ୍ପୀ

* *
*

Paramarthi Printing Works, Cuttack—1

ସଂପାଦକ ଓ ପରିକଳ୍ପନା ସଂପାଦକ

**ସୁରେନ୍ଦ୍ରନାଥ ବିଦ୍ୟାଧର**

ସହସଂପାଦକ

**ଶ୍ରୀ ଶ୍ରୀନିବାସ ପାଇକରାୟ**

(ସେକ୍ରେଟାରୀ, ନରସିଂଗଡ଼ କ୍ଳବ)

**ମୂଲ୍ୟ ଦେଢ଼ ଟଙ୍କା**

---

ଶ୍ରୀ ବିଦ୍ୟାଧରଙ୍କ ଲେଖଣୀରୁ **"ଡାଲ ପାହାଡ"** **"ସ୍ୱପ୍ନ ଓ ପୃଥ୍ୱୀ"** ପରେ ପରେ ନୂତନ ଧରଣର **"ଅଭିଳଷିତ ଶ୍ରାବନ୍ତୀ"** ଓ **"ଉଷାର ଶିଶିର"** ଉଭୟେ ଶ୍ରେଷ୍ଠ ସୃଷ୍ଟି ବୋଲି ପାଠକ ପାଠିକାଙ୍କ ମହଲରେ ଚହଳ ପଡ଼ିଛି ।

## ବର୍ତ୍ତମାନ ପ୍ରକାଶ ପାଇଲା ପଢ଼ନ୍ତୁ

ଶ୍ରୀ ଗୋପୀନାଥ ମହାନ୍ତି, ଶ୍ରୀ ରାଜକିଶୋର ରାୟ, ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ମହାମାନ୍ୟ କୁନ୍ତଳମଣି ସାହୁ ଓ ଶ୍ରୀ ନଗର ପ୍ରଭୃତିଙ୍କ ଶୁଭେଚ୍ଛାକୁ ଭୂମିକାରେ ବାନ୍ଧି ଶ୍ରେଷ୍ଠ ଲେଖକ ଲେଖିକାଙ୍କ ନିପୁଣ ପ୍ରତିଭାର ପରିଚୟ ଦେଇ ଓଡ଼ିଆ ସାହିତ୍ୟରେ **"ଶେଫାଳି"** ଏକ ଅଭିନବ ଉଦୟ ।

ମୂଲ୍ୟ—ମାତ୍ର ଦେଢ଼ ଟଙ୍କା

ମୂଲ୍ୟବାନ ବନ୍ଧେଇ ମୂଲ୍ୟ ଦୁଇଟଙ୍କା

ମ୍ୟାନେଜର

**ଶେଫାଳି**

ପଲ୍ଲୀ କୁଟୀର, କଟକ-୨



ଚିତ୍ରକର—ଶ୍ରୀ ରଘୁନାଥ ଶ୍ରେଷ୍ଠବସୁ

"କାକର-ହକଲା ବଣ, ବୁଦା ଶିରେ   କପୋତ ବାହୁନ ଗାଇଲା
ଦିନ ରତ ରତ ବେଳ ହେଲା ଗତ   ସାଥିପେ ବାହୁଡ଼ି ନଇଲା ।"

(ସଚ୍ଚିଦାନନ୍ଦ ରାଉତରାୟ)



# ଜଣାଣ

ଶ୍ରୀ ବ୍ରଜକିଶୋର ପଟ୍ଟନାୟକ

ବହୁତ ପ୍ରକାରର ମଣ୍ଡଳାଧିପତି ଅଛନ୍ତି । ସେ ସାହିର ଠାକୁରଙ୍କର ପୂଜାରୀ ହରନନା ସେମିତି ଜଣେ ସକାଳ ସଞ୍ଜରେ ଯେତେବେଳେ ଠାକୁରଙ୍କର ଘଣ୍ଟି ବାଜେ, ଠାକୁରଙ୍କର ସବୁଠାରୁ ନିକଟରେ ରହନ୍ତି ହରନନା । ସେହି ଏକା ସହଜରେ ଓ ସୁବିଧାରେ ଠାକୁରଙ୍କୁ ଛୁଇଁ ପାରନ୍ତି । ଠାକୁରଙ୍କ କଥା ବାହାର ଲୋକଙ୍କୁ ଶୁଣାଇ ପାରନ୍ତି । ଅଉ ବାହାରର ଲୋକଙ୍କ ଦୁଃଖ ଠାକୁରଙ୍କୁ ଜଣାଇ ପାରନ୍ତି । ବିଶେଷ ଟଙ୍କା ପଇସାର ସୁବିଧାରେ ନଥିଲେବି ହରନନାଙ୍କର ବହୁତ ଖାତିର ।

ତାଙ୍କର ସବୁଠାରୁ ବେଶି ପ୍ରତାପ ବିଧବା ଓ ରୋଗିଣୀଙ୍କ ଉପରେ । ଯେତେବେଳେ ପାଣି ବଇଦ, ଡାକ୍ତରଙ୍କ ଔଷଧ ଭଲ ହୋଲ୍ କରେ ନାହିଁ, ଅବସ୍ଥା ଦିନୁଦିନ ଖରାପ ହୁଏ, ସେତେବେଳେ ଗ୍ରହ ଶାନ୍ତି କରିବାକୁ ନ ହେଲେ

ଠାକୁରଙ୍କୁ ସନ୍ତୋଷ କରିବାକୁ ହରି ନନା ଆସି ତାଙ୍କର ଠାକୁର ପୂଜାର ତାଲିକା ଦିଅନ୍ତି—ଠିକ୍ ଡାକ୍ତରଙ୍କ ଔଷଧପରି । ବହୁତ ପ୍ରକାରର ଦ୍ରବ୍ୟଗୁଣ ମିଶିଲେ ଗୋଟିଏ ଔଷଧ ତିଆରି ହୁଏ ।

ଅଧୀର ହୋଇଥିବା କୁଟୁମ୍ବ ପରିଜନମାନଙ୍କୁ ସେ ଆଶ୍ୱାସନା-ବାଣୀ ଶୁଣାନ୍ତି—ବ୍ୟସ୍ତ ହୁଅନା ବାବୁ, ଏ ହୋଇଛନ୍ତି ସାକ୍ଷାତ ଠାକୁର ! ସେହି ସବୁ ଭଲ କରିଦେବେ । ମଣିଷମାନେ ମିଛ ବଢ଼େଇ କରି କହି ବୁଲୁଛନ୍ତି ଯେ ସେମାନେ ସବୁ କରନ୍ତି—ମିଛକଥା । ମଣିଷ କିଛି କରେ ନାହିଁ । ସବୁ ଠାକୁରଙ୍କ ବିଚାର । ଶ୍ରେଷ୍ଠ ଶ୍ରେଷ୍ଠ ଅଡ଼ୁଆ ଠାକୁରଙ୍କ ବିଚାରରେ ମଣିଷ କରିଯାଏ । ବିପଦ ପଡ଼ିଲା ବେଳକୁ ସେହି ଠାକୁରଙ୍କୁ ଆଶ୍ରୟ ନ କଲେ ଆଉ ଗତି ଅଛି ?

ହରି ନନାଙ୍କର ସେତେବେଳେ ମୁହଁ ଗମ୍ଭୀର ଓ ଆଖି ଅଚଞ୍ଚଳ । ସେ ତାଙ୍କର ମହତ୍ତ୍ୱ ଆଉ ଠାକୁରଙ୍କ ବଡ଼ପଣ ଏକା ଥରକେ ବୁଝାଇ ଦିଅନ୍ତି ।

ନଡ଼ିଆ ଗୁଆ ଘିଅ—ଟିକିଏ ବି ଡାଲଦା ମିଶି ନଥିବ । ଭଲ ଗୁଆ—ଟିକିଏ ବି କଣା ଦାଗ ନଥିବ ଇତ୍ୟାଦିର ଫରମାସ କଲାବେଳେ ତାଙ୍କର ଯେଉଁ କଥାର ଓଜନ ସେତକ ପଇସାଖିଆ ଡାକ୍ତର ପାଖରେ ବି ମିଳେ ନାହିଁ ।

ଶେଷକୁ ଯଦି ପୂଜାରେ ଠାକୁର ନ ଶୁଣିଲେ ତେବେ ହରିନନା କହନ୍ତି—ମତେ ପରା ଭାରି ଅଖାଞ୍ଜି ଲାଗୁଥିଲା ପୂଜା କରିବା ବେଳେ । ସକାଳୁ ସେ ଦିନ ଉଠିଲା ବେଳେ ନିଶ୍ୱାସ ଠିକ୍ ପୁଡ଼ାରେ ଯାଉ ନଥିଲା । ମନକୁ ପାପ ଛୁଉଁଥିଲା । ଠାକୁରେ ସୂଚନା ଦେଇଥିଲେ—ହବନାହିଁ, ହବନାହିଁ । ସେମାନେ ତ କହିବେ ନାହିଁ—ଖାଲି ଇଶାରା ଦେଇଯିବେ ।

ରୋଗୀ ମରିଗଲା ପରେ ସେ ଆସି ବୁଝାନ୍ତି ସବୁ ଠାକୁରଙ୍କ ବିଚାର ଏ ସଂସାରରେ କେହି କାହାର ନୁହେଁ । ସମସ୍ତେ ଯେଝା କାମ ସାରି ଫେରିଯାନ୍ତି । ଋଣ ସୁଝେଇବାକୁ ମଣିଷ ଏହି ମର୍ତ୍ତ୍ୟରେ ଜନ୍ମ ନିଏ । ଗଲାଲୋକ ଚାଲିଯିବ । ତାକୁ କେହି ବାନ୍ଧି ରଖି ପାରିବ ନାହିଁ ।

ଲୋକଙ୍କର କାନ୍ଦ ହରିନନାଙ୍କର କଥାରେ ବନ୍ଦ ହୁଏ କି ଆପଣାଛାଏଁ ସେଇଟା ଥମିଯାଏ, ଏ ବିଷୟରେ ହରି ନନାଙ୍କର ଗୋଟିଏ ମତ—ସେମାନେ ଏତେ ଅଧୈର୍ଯ୍ୟ ହୋଇଥିଲେ, ଯେମିତି ତାଙ୍କୁ ଦି'ପଦ ଭଲକଥା କୁହାଗଲା ତାଙ୍କ କୋହ ସେମିତି ଆପଣା ଛାଏଁ ବନ୍ଦ ହୋଇଗଲା—ହବ ନାହିଁ ? ଯେଉଁ ଠାକୁରେ ମଣିଷକୁ ଦୁଃଖ ଦିଅନ୍ତି ସେଇ ପୁଣି ତା'ର ଦୁଃଖ ହରି ନିଅନ୍ତି ।

ମରିଯାଇଥିବା ଲୋକର ପରିବାର ସନ୍ତୋଷରେ ରହେ । ହରିନନା ସେମିତି ହସି ହସି ଅସି ତାଙ୍କୁ ସଙ୍ଖୋଳି ଯାନ୍ତି, ଠାକୁରଙ୍କ ମହିମା ପ୍ରଚୁର ହୁଏ ।

ଆଜି ଦିନେ ହେଉଛନ୍ତି ବିଧବା—ତାଙ୍କର ଠାକୁରଙ୍କ ସାଙ୍ଗରେ ବର୍ଷକ ତିନିଶହ ପଂଚଷଠୀ ଦିନ ସମ୍ବନ୍ଧ । ସେମାନଙ୍କର ମଙ୍ଗଳ ମନକୁ ହରିନନା କେବଳ ହସେଇଁ ପାରନ୍ତି । ପଦେ ପଦେ କଥାରେ ତାଙ୍କ ଉପଦେଶ—ମହାସତୀ ହେଉଛନ୍ତି ବିଧବାମାନେ । ସ୍ୱାମୀ ଅଗରୁ ଅହ୍ନଅ ମରଣ ହେଲେ ସ୍ୱାମୀପ୍ରତି କର୍ତ୍ତବ୍ୟ କରିହେଲା ନାହିଁ । ଯିଏ ସ୍ୱାମୀ ପରେ ବଞ୍ଚି ତାଙ୍କର ପରଲୋକପାଇଁ ଏମିତି କାଷ୍ଟା-କଷ୍ଟାରେ ରହିଥାଏ, ସେ ଯାହା କରେ, ଅହ୍ନଅମାନେ କରନ୍ତି କେଉଁଠି ?

ଯେତେବେଳେ ବିଧବାମାନେ ନିଜକୁ ଭାବୁଥାନ୍ତି ପାପୀ ବୋଲି ହରିନନା ତାଙ୍କୁ ବୁଝାଉଥାନ୍ତି ଯେ ସେମାନେ ଅସଲ ଧାର୍ମିକ । ଯାହାକୁ କଷ୍ଟ ଦେବାକୁ ଥାଏ, ତାକୁ ଠାକୁର ଦୁଃଖ ଦିଅନ୍ତି । ସୁନାକୁ ଖାଦ ପୋଡ଼ି ନଷ୍ଟ କରି ଦେଲା ପରି ସେମାନେ କଷ୍ଟ ସହି, ଉପବାସ କରି, ଠାକୁରଙ୍କୁ ଡାକି ଡାକି ଇହଲୋକ, ପରଲୋକ ଉଭୟର ମଙ୍ଗଳ କରନ୍ତି ।

କାର୍ତ୍ତିକମାସରେ କାର୍ତ୍ତିକ ମାହାତ୍ମ୍ୟ ଅଜି କାର୍ତ୍ତିକପୁରାଣ ପଢାଗଲା-ବେଳେ ଠାକୁର, ହରିନନା ଅଜି ସେହି ବିଧବା ଗୁଡ଼ିକଙ୍କ ଭିତରେ ଖୁବ୍ କମ୍ ଫରକ ରହିଯାଏ । ଠାକୁରଙ୍କ ମୁହଁର କଥା ହରିନନଙ୍କ ପୋଥିପାଠ ଭିତର ଦେଇ ସିଧାସଳଖ ଦେବତା ଅଜି ଭକ୍ତଙ୍କ ଭିତରେ ଯା ଅସ କରେ । ସେତେବେଳେ ହରିନନାଙ୍କ କଥା ଅସଲ ଖାଣ୍ଟି ଠାକୁରଙ୍କର ଅଭୟ-ବାଣୀ ପରି ।

ଅଜି ପ୍ରକାରେ ଲୋକ ସେମିତି ହରିନନାଙ୍କର ପ୍ରଜା—ଯେଉଁମାନେ ଘରେ ଠାକୁର ରଖିଥାନ୍ତି । ହରିନନାଙ୍କର ଅସିବା ଡେରି ହେଲେ ଘରେ ସମସ୍ତେ ଚିନ୍ତିତ ହୋଇ ପଡ଼ନ୍ତି । ଠାକୁର ଉପାସ ରହିଲେ ଘରଯାକ ସମସ୍ତେ ଉପାସ । ସେଥିପାଇଁ ସମସ୍ତଙ୍କର ଈଶ୍ୱରଙ୍କ ପ୍ରାର୍ଥନା ହରିନନାଙ୍କ ଠାଇଁ ।

ସେଥିପାଇଁ ସେ ସେହି ସାହିର ଯଜମାନଙ୍କ ପାଖରେ ବନ୍ଧା । କୁଆଡେ଼ ଯାଇଅସି ପାରନ୍ତି ନାହିଁ । ପୁନିଅ ପରବ ଦିନରେ ଯେତେବେଳେ ସମସ୍ତଙ୍କର ଛୁଟି, ସେତେବେଳେ ହରିନନଙ୍କର ବହୁତ କାମ—ସେଦିନ ଠାକୁର ପୂଜା ଜାକଜମକରେ ହେବ । ଏମିତି ସେ ବର୍ଷଯାକ ଖଟୁଥାନ୍ତି । ଉଠିବାଠାରୁ ଶୋଇବା ଯାଏ ଠାକୁରଙ୍କ ନାମ କୀର୍ତ୍ତନ, ଠାକୁରଙ୍କ ଟୁଣି ତୁଗୃର ଅଜି ଠାକୁରଙ୍କ ଗୁଣ ପ୍ରକାଶ କରୁଥାନ୍ତି—ସାହିପାଡ଼ ସମସ୍ତେ ପାପୀ । ସେଥିରେ ଖାଲି ପୁଣ୍ୟାତ୍ମା ହେଉଛନ୍ତି ହରି ନନା ।

ହରିନନା ବେଳେ ବେଳେ ଅଥୟ ହୋଇ ପଡ଼ନ୍ତି—ଏତେ ଲୋକଙ୍କର ଦାଉ ମଡ଼ ସେ ସହି ପାରିବେ ନାହିଁ । ସେ ଛାଡ଼ି ଦେବେ । ତାଙ୍କ ମା ତାଙ୍କୁ ବୁଝାନ୍ତି—ଅରେ ବହୁତ ସୁକୃତ ଥିଲେ ମଣିଷ ଈଶ୍ବର ସେବା କରିବାର ସୁବିଧା ପାଏ । ହେଇ ଦେଖ୍ କେତେ ଲୋକ ଠିକଏ ଦାଅଁ ପୂଜା କରିବାକୁ କେତେ ଉତ୍ଥଳ ବିକଳ ନ ହେଉଛନ୍ତି । ତୁ ଅଠଜାଳି ବାରମାସୀ ସେହି ଠାକୁରଙ୍କୁ ସେବା କରିବା ଭାଗ୍ୟ ପାଇଛୁ । ଛାଡିଯିବୁ ?

ଏହି ସେବା ପୂଜାରେ ଯାହାମିଳେ ସେଥିରେ ହରି ନନା, ତାଙ୍କ ମା ଅଉ ସ୍ତ୍ରୀ ଘର ଦୁଆର କରି ରହିଥାନ୍ତି । ହରି ନନାଙ୍କର ସେଇଟା ହେଲା ପାଇଟି । ମା ଗୋରୁ କାମ କରେ । ସ୍ତ୍ରୀ ଘରକାମ କରେ । ଘରେ ଠାକୁର ନ ଥାନ୍ତି । ଘରକାମ ଚଲେ ଖାଲି ମନ୍ଦିରେ । ସେ ସକାଳୁ ଉଠି ବେଗି ବେଗି ଯାହା ଯେମିତ ଅବାହନ, ବିସର୍ଜନ, ଗାଧୋଇବା, ଖାଇବା, ଶୋଇବା, ଉଠିବା ମନ୍ତ ଥାଏ ସବୁ ଶୀଘ୍ର ଶୀଘ୍ର ଅଉଡ଼େଇ ଦିଅନ୍ତି—କାମକୁ ଯିବେ ବୋଲି ।

ସେହି ସାହିର ଲୋକେ ଜରୁର ହୋଇଗଲେ ଯେମିତ ଅଖି କାନରେ ଦ'ଟା ମୁରେଇ ଦେଇ ବାହାରି ଯାନ୍ତି ଅବା ଯେମିତ ସେମିତ ଦାନ୍ତ ଘଷା, ତେଲ ଲଗା ଓ ଗାଧୁଆ ସାରନ୍ତି, ସେ ବି ସେହିପରି ଠାକୁର କାମକୁ ଯିବାପାଇଁ ନିଜର ନିତ୍ୟ କର୍ମ ଝପାଝପ ସାରି ଦିଅନ୍ତି । କିନ୍ତୁ ଠାକୁର ଘରେ କିଛୁ କଥା ଛାଡ଼ ଯିବ ନାହିଁ ।

କାରଣ ସବୁ ଭକ୍ତ ତ ସମାନ ନୁହନ୍ତି । ଯାହାର ପାପ ଯେତେ ବେଶି, ତାର ଧର୍ମ ସେତେ ଅଧିକ । ମକଦ୍ଦମାରେ ଜିଣିବା ପାଇଁ, ଶତ୍ରୁକୁ ହରାଇବପାଇଁ, ଦୋଷରୁ ମୁକ୍ତି ପାଇବା ପାଇଁ ଯାହାର ମନ ଯେତେ ପ୍ରଖର ଠାକୁରଙ୍କ ସେବା ପୂଜା ତା'ର ସେତେ ଅଧିକ । ପୁଣି ଯେଉଁମାନଙ୍କର କାମ ଅଳପ, ଅଉ ନିତେଇ ନିତେଇ ଠାକୁର ପୂଜା ଦେଖି ଦେଖି ଯେଉଁମାନଙ୍କ ମନରେ ଠାକୁର ପୂଜାର କ୍ରମ ନୀତଗତ ସବୁ ଜଣା ପଡ଼ିପାଏ, ସେମାନେ ତାଙ୍କୁ ଜଗି ବସିଥାନ୍ତି । ଠିକ୍ ଯେ କିଛୁ ଛାଡ଼ ହୋଇଗଲେ ସେମାନେ ଲକ୍ଷ୍ୟ ରଖିଥାନ୍ତି । କାଳେ ଠାକୁରଙ୍କ ଅଭିଶାପ ପଡ଼ିବ । ସେଥିପାଇଁ ତାଙ୍କୁ ତାଗିଦ କରି କହନ୍ତି—ଅଜି ପୂଜାଟା ବଡ଼ ତରବରରେ ହେଲା । ମନ ସନ୍ତୋଷ ହେଲା ନାହିଁ । ଠାକୁରଙ୍କ ଅଭିଶାପକୁ ନନାଙ୍କର ଯେତିକି ଭୟ ଥାଏ, ତହିଁରୁ ଅଧିକ ଥାଏ ଯଜମାନଙ୍କର କଟୁକ୍ତି ଯୋଗୁଁ । ନିଷ୍ଠାରେ ନ ରହିଲେ ସେମାନେ ଅଉ ରଖିବେ ନାହିଁ ।

ଲୋକେ ପ୍ରକୃତରେ ସରଳ ନୁହନ୍ତି । ପୂଜକ ନିଷ୍ଠାରେ ନ ରହିଲେ, ସେମାନେ ପୂଜା କରିବେ ନାହିଁ । ତ ଙ୍କର ନିଷ୍ଠା ନାହିଁ ବୋଲି ଦୁଃଖ

ବଡ଼ କଷ୍ଟ । ଯାହା ହାତରେ ଠାକୁରଙ୍କ ପୂଜା କରିବେ, ସେ ଯେବେ କଷ୍ଟରେ ନ ରହିଲା, ତେବେ ଠାକୁରଙ୍କର ଆଉ ଦୋଷ କଣ ? ପ୍ରତ୍ୟକ୍ଷ ଫଳ ପାଇବାର ପ୍ରଧାନ ଉପାୟ ହେଲା ପୂଜକର କଷ୍ଟ । ସେଥିପାଇଁ ସମସ୍ତେ ହରି ନନାଙ୍କର ପ୍ରତ୍ୟେକ ଦିନ ଚଳିବାକୁ ଦୃଷ୍ଟି ରଖିଥାନ୍ତି ।

ବାଧ୍ୟ ହୋଇ ହରି ନାନା ବହୁତ ସକାଳୁ ଉଠନ୍ତି । ଶୀଘ୍ର ଗାଧୁଅନ୍ତି । ଆଉ ସକାଳର ପୂଜା ଖାଲି ପେଟରେ କରନ୍ତି । ତାଙ୍କର ବି ବିଶ୍ୱାସ ଯେ ତାଙ୍କର କାଷ୍ଟ ଓ ନିଷ୍ଠା ପାଇଁ ଠାକୁରେ ତାଙ୍କୁ ଭଲ ଜାଗାରେ ରଖାଇଛନ୍ତି ।

ଫେଁକୁ ଫେଁକୁ ଡେରି ହୁଏ । ଘର ଘର ବୁଲି ଠାକୁର ପୂଜା ସାରିଲା ବେଳକୁ ବହୁତ ଡେରି । ସେଥିପାଇଁ ତାଙ୍କ ମା ତାଙ୍କୁ ଦିନେ ଦିନେ ଦି'ଟା କ'ଣ ପାଟିରେ ପକାଇ ଯିବାପାଇଁ ବରାଦ କଲେ ହରିନନା ଚିଡ଼ି ଉଠନ୍ତି—କି ଅମଙ୍ଗଳ କଥା ! ଖାଇ ସାରି କ'ଣ କିଏ ଠାକୁର ପୂଜା କରେ ?

ମା'ଙ୍କୁ ସେ ବୁଝାନ୍ତି ପେଟ ଖାଲିଥିଲେ ଠାକୁର ପୂଜା ହୁଏ । ଖାଇ ଠାକୁର ପୂଜା କରିବା ଶାସ୍ତ୍ର ବିରୁଦ୍ଧ । ଯେତେବେଳେ ଭୋକରେ ପେଟ ଅଉଟି ହେଉଥାଏ, ସେତିକି ବେଳକୁ ସବୁ ଜନମାନଙ୍କର ପାଳି ପଡେ । ଥିଲା ବାଲାଙ୍କର ଘରେ ଠାକୁରେ ସଅଳ କାମ ସାରନ୍ତି । ଆଉ ନଥିଲା ଲୋକଙ୍କର ଘର ଶେଷକୁ ଥାଏ—ତାଙ୍କର ତ ଅଛି କମ୍ । ଠାକୁର ଉପାସ ରହିବା କଥା ।

ତେଣୁ କାଷ୍ଟ କଷ୍ଟ ସାଙ୍ଗରେ ଏହି ଇହ ସଂସାରର ଉନ୍ନତି କେମିତି ଧାରରେ ହରିନନା ଯୋଡ଼ା ଯୋଡ଼ି କରନ୍ତି ସେ କଥା ସେ ନିଜେ ବି ବୁଝି ନ ଥିଲେ । କିନ୍ତୁ ସେ ଯେଉଁ ଯେଉଁ ସ୍ଥାନକୁ ଯେତେ ଉଚ୍ଚରେ ଯା'ନ୍ତି ସେହି ସେହି ସ୍ଥାନରେ ଠାକୁରଙ୍କ ପ୍ରତି ସେତିକି ଅଧିକ ଭକ୍ତି ଥାଉ ବା ନ ଥାଉ ଉଜ୍ଜ୍ୱଳ ବିଚଳ ରହିଥାଏ ।

ଧନୀ ଲୋକଟା ଘରେ ସେ ଆଉରି ଅଧିକ ଧନ ଦେବାକୁ ଓ ନିର୍ଦ୍ଧନୀଙ୍କ ଘରେ ସେ ଯେ କୌଣସି ପ୍ରକାରେ କିଛି ଧନ ଅଗେଇ ଦେବାକୁ ପ୍ରାଣପଣେ ଚେଷ୍ଟା କରନ୍ତି । ତାଙ୍କର ପ୍ରକୃତ କଠିଣ କାମ ଗରିବ ଲୋକଙ୍କ ଘରେ ପଡ଼େ । ସେଇଠି ତାଙ୍କର ପରୀକ୍ଷା । ସେଇଠି ବି ଠାକୁରଙ୍କର ପରୀକ୍ଷା ।

ଏହି ସଂସାର ଖାଲି ଧନ ଦଉଲତରେ ନୁହେଁ, ଧର୍ମ ଲୋକଙ୍କୁ ଉପାୟ ରଖାଇବାକୁ କେବଳ ଠାକୁରଙ୍କ ନାଁ ନେଇ ହରିନାମ ସମର୍ଥ । ହରିନନା ଇଚ୍ଛା କଲେ ପୂଜା ବନ୍ଦ କରିଦେଇ ବାବୁମାନଙ୍କୁ ଭଲ କରି ଶିକ୍ଷା ଦେଇ ପାରିବେ । ସେଥିପାଇଁ ସମସ୍ତେ ହରିନନାଙ୍କୁ ଖୁସିରେ ରଖିବାକୁ ଚେଷ୍ଟା କରନ୍ତି । ତାଙ୍କର ଧନ ଖୁବ୍ ଭଲରେ କଟୁଥାଏ ।

ହରିନନାଙ୍କର କିଛି ପିଲା ନ ଥାଏ । ସେଇଟା ବି ତାଙ୍କର ଗୋଟିଏ ପରୀକ୍ଷା । କେହି ପଚାରିଲେ ସେ କହନ୍ତି—କ'ଣ କରିବ, ସବୁଠି ବାଧିର ଭର୍ତ୍ସଣି । ଠାକୁରଙ୍କୁ ତ ଡାକୁଛି ପ୍ରତିଦିନ ପିଲା ବକଟେ ପାଇଁ । ଶୁଣୁନାହାନ୍ତି । ସମସ୍ତଙ୍କ କଥା ଶୁଣୁଛନ୍ତି । କରିବ କଅଣ ?

କେହି କେହି ସନ୍ଦେହ କରନ୍ତି ଯେ ହରିନନା ଯଦି ଠାକୁରଙ୍କଠାରୁ ପିଲାଟିଏ ଆଣିପାରୁ ନାହାନ୍ତି, ତେବେ ସେ ଅନ୍ୟମାନଙ୍କର କ'ଣ କରି ପାରିବେ ?

କେହି ସେ କଥା ପଚାରିଲେ ହରିନନା କହନ୍ତି—କ'ଣ ତାଙ୍କ ଇଚ୍ଛା ଠାକୁରେ ଜାଣନ୍ତି । ଠାକୁରେ ଅବା କହୁଥିବେ—ତୁ ତ ମୋର ପୂଜକ । ତୋ କଥା ସବା ପଛରେ । ତୁତ ସମସ୍ତଙ୍କ ପାଇଁ ସବୁ ପ୍ରକାର କଥା ମାଗୁଛୁ, କାହାକୁ ଆଗ ଦେବି ? ହରିନନାଙ୍କ ଆଖିରେ ଭାବପ୍ରବଣତା ଦେଖା-ଯାଏ । ପଚାରିବା ଲୋକେ ବି ବୁଝିଯାନ୍ତି ନ ହେବ କେମିତି । ମଣିଷତ ଗୋଟାଏ କାମ କରିବ ; ପାଞ୍ଚଟା କାମ ଏକାସାଙ୍ଗରେ କରିବ କେମିତି ? ଠାକୁରେ ଧାଡ଼ି ଲେଖିଲା ପରି ଗୋଟିଏ ଗୋଟିଏ କାମ ଛିଣ୍ଡାଇ ସିନା ଚାଲିବେ । ସତରେ ସମସ୍ତଙ୍କ କଥା ଏକାସାଙ୍ଗରେ ଏକାପରି ଆଉ ଏକାବେଳେ ହେବ କେମିତି ।

ତଥାପି ହରିନନାଙ୍କ ମନରେ ସନ୍ଦେହ ରହିଯାଏ—ଏ କଳିଯୁଗରେ କ'ଣ ଠାକୁର ଚାଲିଗଲେଣି କି ? ସେ ନିରେଖି କରି ଠାକୁରଙ୍କ ପ୍ରତିମା ଆଡ଼୍ ଅଛାନକୁ ଚାହେଁ । ନଈ ଝର ଶୁଖିଗଲାପରି ଠାକୁରେ କ'ଣ ଚାଲିଗଲେଣି କି ପାତାଳକୁ ?

ବଡ଼ପାଟିରେ ମନ୍ତ୍ର ପଢ଼ନ୍ତି, ପୂଜାର ସବୁ ବିଧି ନିଠେଇ ନିଠେଇ କରନ୍ତି । ଅତି ଯତ୍ନରେ ଫୁଲ ଚଢ଼ାନ୍ତି । କାହାର କ'ଣ ମାନସିକ ପୂରା ହେଲେ ସେ ଆସି ଭେଟି ଦକ୍ଷିଣା ଦେଇଯାଏ । ଦେଲାବେଳେ କହେ ଠାକୁରେ ଅଛନ୍ତି ।

ହରିନନା ଗୁହାରି କହନ୍ତି ଲୋକଟିଅଡ଼େ । ଠାକୁର ଅଛନ୍ତିତ । ତେବେ ତା'ର ନିଜକଥା ଶୁଣୁନାହାନ୍ତି କାହିଁକି ? ସେ କ'ଣ ଜଣେ ପାପୀ ?

ଲୋକେତ କହୁଛନ୍ତି ସେ ଅସଲ ଧାର୍ମିକ—ଯେ ଠାକୁରଙ୍କ ପାଖରେ ଥାନ୍ତି ବୋଲି । ସେ ବି ଅନ୍ୟମାନଙ୍କୁ ସାର୍ଟିଫିକେଟ୍ ଦେଇଛନ୍ତି—ସେମାନେ ଅସଲ ଧାର୍ମିକ । ସବୁ ପୂଜା କରୁଥିବା ଲୋକ ଧାର୍ମିକ ଆଉ ତାଙ୍କ ଦ୍ୱାରା କରାଉ-ଥିବା ଲୋକ ଧାର୍ମିକ ଭିତରେ ଗଣନେ ।

ତେବେ ପାପୀ କିଏ ? କଷ୍ଟ ପାଉଥିବା ଲୋକେ ପାପୀ ନା ମଉଜ-ମଜଲିସ୍‌ରେ ଥିବା ଲୋକେ ପାପୀ ? ଧର୍ମ ଗ୍ରନ୍ଥରେ ତ ଦୁଇଅଡୁ ଲେଖା ହୋଇଛି । ଯାହାର ଯେତେ କଷ୍ଟ ଠାକୁରଙ୍କର ସେତିକି ନିକଟ, ପୁଣି ବି ଲେଖା ହୋଇଛି ଯେ ଠାକୁର ପୂଜା କଲା, ତା'ର କଷ୍ଟ ମୋଚନ ହେଲା ।

ଠାକୁରଙ୍କ ମାଜଣା ହେବ କରୁ ସେ ବେଳେ ବେଳେ ଠାକୁରଙ୍କୁ ପଚାରନ୍ତି—କ'ଣ ଦେବତା ଅଛନ୍ତି ? ଲୋକେ ଦେଖେଇ କହନ୍ତି—ନନାଙ୍କର ଠାକୁରଙ୍କ ସଙ୍ଗରେ ବହୁତ କଥାବାର୍ତ୍ତା । ସେ ଠାକୁରଙ୍କୁ ମାରି ପାରିବେ, ତାଡ଼ି ପାରିବେ, ତାଙ୍କର ପ୍ରଶଂସା ଗାଇ ପାରିବେ, ତାଙ୍କର ନିନ୍ଦା କହିପାରିବେ ।

ସେମାନେ କେବଳ କହିବେ—ସେ ହଟିଆ ଠାକୁର ।

ଠାକୁରଙ୍କ ସାଙ୍ଗରେ ଏମିତି ଭକ୍ତ, ସ୍ନେହ, ଅଶକ୍ତ, ବିରକ୍ତ, ଶୁଦ୍ଧ, ଅଶୁଦ୍ଧ ସଂସ୍କୃତ ଅଉ ମାତୃଭାଷାରେ ବହୁତ କାମ ଦାମ କଥାଭାଷା ଚଳେ । ସେଠି ହରି ନନା ଚିଙ୍କି ପାରନ୍ତି, କାନ୍ଦି ପାରନ୍ତି, କପାଳରୁ ଝାଳ ପୋଛି ପାରନ୍ତି, ଦେହରୁ ମାଛି ହୁଙ୍କୁଡ଼ାଇ ପାରନ୍ତି । କାନୁ କର୍ତ୍ତବ୍ୟ ଅନୁରୋଧରେ ତାଙ୍କର ସବୁଦାକ ବେଳ କଟେ ଠାକୁରଙ୍କ ପାଖରେ ।

ମୁଗ୍ଧ ଗୁହାଣୀରେ ଲୋକେ ଗୁହାରି କହନ୍ତି ହରି ନନାଙ୍କୁ—ଦେବତାଙ୍କ ପାଖରେ ସାକ୍ଷାତ ଦେବତା ସେ ।

ହରି ନନାଙ୍କର ପୁଅଟିଏ ହୋଇଛି । ଏଇ ଖବର ଚାରିଆଡ଼େ ଚହଟି ଗଲା—ଠାକୁରେ ଅଛନ୍ତି । ଶେଷକୁ ତାଙ୍କ କଥା ଶୁଣାଗଲା । ଅଉ ଗୋଟିଏ ସମସ୍ୟା ଯେ ସେ ପୂଜା କରିବେ ନାହିଁ—ଅଶୌଚ ।

ସମସ୍ତେ ଗୁହାରି କହିଲେ ବ୍ୟାକୁଳ ହୋଇ ଘରୋଇ ଠାକୁର ଗାଧୋଇବେ କେମିତି । ଘରେ ଲୋକ ପାଣି ଛୁଇଁବେ କେମିତି ? ସମସ୍ତଙ୍କ ଘରେତ ଗୋଟିଏ ଗୋଟିଏ ମନ୍ଦିର । ମନ୍ଦିର ଭିତରେ ପାପ ଅଶୌଚ ହୁଏ ନାହିଁ କିନ୍ତୁ

ଘରେ ରୁହଏ । ସବୁରି ଘରେ ଦୀପ ଅନ୍ଧାର ଦୂର କରିବାକୁ, ପହଁର ଅଳିଅ ଦୂର କରିବାକୁ, ପିଲା—ସଂସାର ଉଜ୍ଜଳ କରିବାକୁ ଅଛି ଘରଣୀ—ଘରେ ରହିବାକୁ ଯେମିତି ରହିଥାନ୍ତି, ଠିକ୍ ସେମିତି ଘରଣୀ ଓ ଘର ଲୋକଙ୍କ ବିପଦ ଆପଦକୁ ନିଜର ଦେବତ୍ୱରେ ସମ୍ଭାଳି ନେବାକୁ ସେମିତି ଗୋଟିଏ ଗୋଟିଏ ଠାକୁର ପ୍ରତିଷ୍ଠା ହୋଇଥାନ୍ତି ।

ସେ ବିବାଦ କରିଛନ୍ତି ଜଣେ ବିଦଳିଆ — ସେତେ ନିଷ୍ଠାବାନ୍ ନୁହେଁ, ତେବେ କାମ ଚଳାଇ ନେବ ।

ଯେ ଯେତେ ଶକ୍ତି ହେଲେ ବି ଅଶୌଚକୁ ତ ତାହାର ହାତ ନାହିଁ, ସେ କ'ଣ କରିବେ ? ଯାହା ହେଉଛି ହେଉ—ଶାନ୍ତି ରକ୍ଷା ହୋଇ ପାରିଲେ ହେଲା ।

କାମ ଚାଲିଥାଏ । ହରି ନନାଙ୍କର ପିଲା ଦେହ ଭଲ ରହୁ ନାହିଁ । ସେ ଘର ଘର ବୁଲି ଚିକିତ୍ସା ପାଇଁ ପରାମର୍ଶ ଦେଉଥାନ୍ତି । ସମସ୍ତେ ବି ତାଙ୍କ ଅସୀମ କୃତଜ୍ଞତାରେ ପାରୁପର୍ଯ୍ୟନ୍ତ ତାଙ୍କୁ ସାହାଯ୍ୟ କରୁଥାନ୍ତି ।

ବିଭିନ୍ନ ପ୍ରକାର ଔଷଧ, ଦେବୀ ଚିକିତ୍ସା ଠାକୁରଙ୍କର ପାଦକୁ ସବୁ ଏଠାରେ ଦେଇ ହରି ନନାଙ୍କର ପିଲାଟି ଦଶଟି ଦିନରେ ଚାଲିଗଲା ।

ସେ ବିଶ୍ୱାସ କରିବାକୁ ନାରାଜ । ଘରେ କାନ୍ଦ ବୋବାଳି ପଡ଼ିଲା । ହରିନନା ସେ ପିଲାଟିକୁ କୋଳକୁ ନେଇ ପାଟି କରିବାକୁ ଆରମ୍ଭ କଲେ ।

ମୋ ପିଲା ମରିନାହିଁ । ହେଇ ଅଛି ଦେଖ ।

ଲୋକେ ବୁଝାଇଲେ—ଏମିତି କଣ ହେଉଛନ୍ତି ? ଆପଣ ସବୁ ଜାଣିବା ଲୋକ । ଅଧୈର୍ଯ୍ୟ ହେଲେ କି ହୁଏ ? ସେ ଆପଣଙ୍କର ନୁହେଁ—ଚାଲିଗଲା । ମଲା ଛୁଆକୁ ଧରି ଏମିତି କ'ଣ ହେଉଛନ୍ତି ?

—କ'ଣ କହିଲେ ? ମରିଗଲା !—ନାଁ ମରି ନାହିଁ । ମରିଥିଲେ ବି ମୁଁ ତାକୁ ଫେରିବି । ସେହି ଠାକୁର ଦେଇଥିଲା ।

—ଠାକୁରଙ୍କ ଦୋଷ କ'ଣ ? ଆପଣଙ୍କର ଭାଗ୍ୟରେ ନାହିଁ ।

—ତେବେ ଏଇ ଠାକୁରକୁ ପୂଜିବି କାହିଁକି ? ଦ'ପହର ହେବା ଯାଏ ଉପାସ କରେ । ମୋତେ ଯେତେ ଯାହା ଜଣା ଅଛି, ସବୁ ପ୍ରକାରେ ଠାକୁରଙ୍କୁ ପୂଜୁଛି । ସେ ମୋ ସଙ୍ଗରେ ବାଦ କଲା । ସେ ଠାକୁର ନୁହେଁ । ସେ ପଥର ।

ସେଦିନ ସାହିରେ ଆତଙ୍କ । ବଡ଼ ବିଷମ ସମସ୍ୟା ହରିନନା । ପାଗଳ ହୋଇଗଲେ । ତାଙ୍କ ପରେ ତାଙ୍କର ମା ଆଉ ସ୍ତ୍ରୀ ଲୋକଙ୍କୁ ଅନୁରୋଧ

କରୁଥାନ୍ତି ପିଲାଟିକୁ ନେଇ ଶ୍ମଶାନରେ ଥୋଇ ଦେବାପାଇଁ । ଏଣେ ନନା ଛାଡ଼ିବାକୁ ନାରାଜ । ଗାଳି ଗୁଲ୍‌ଯାଏ ଠାକୁରଙ୍କ ଉପରେ — ଠାକୁର ଠକ ।

ଶେଷକୁ ପିଲା ଗଲା ଶ୍ମଶାନକୁ । ଆଉ ସେ ଫେରିଲେ ଘରକୁ ।

ଲୋକଙ୍କୁ ନୂଆ ଦନାଟି ଭଲ ଲାଗୁ ନାହିଁ । ସେ କାହାକୁ ମନନେଇ ଠାକୁରଙ୍କ ପ୍ରକୃତ ପୂଜାବିଧି କରିପାରୁ ନାହିଁ । ସିମିତି କଲେ ତ ସମସ୍ତଙ୍କୁ ବିପତ୍ତି । ଏଣେ ବାର ପ୍ରକାରର ପୂଜା, ଓଷା । ହରି ନନା ନ ଆସିଲେ ନ ଚଳେ ।

ଛୁଟି ବେଳରେ ଲୋକେ ଯାଇଁ ନନାକୁ ବୁଝାନ୍ତି—ଗୋସେଇଁ ନ ନ ଆସିଲେ ହେବ ନାହିଁ ! ଠାକୁରେ କି ଦୋଷ କଲେ ? ଅପଣି ଆସନ୍ତୁ ।

— ନାଁ ମୁଁ ଯିବ ନାହିଁ । ଆଉ ଠାକୁର ପୂଜା କରିବ ନାହିଁ । ହଳ କରିବ ।

ତାହାର କିଛିଦିନ ପରେ ନନାଙ୍କର ଦୁଃଖ ଊଣା ହୋଇ ଆସିଲା । ସେତେବେଳେ ସେ ଅଭ୍ୟାସ ଯୋଗୁଁ ଠାକୁରଙ୍କ କଥା ଭାବନ୍ତି ।

ଠାକୁରେ ସ୍ନାନ କରି ନଥିବେ । ଅଳଟି ହୋଇ ନ ଥିବ—ତାଙ୍କ ସୁବିଧା ଅସୁବିଧା ସବୁ ମନେ ପଡ଼େ । ଏଣେ ଲୋକ ଆସୁଥା'ନ୍ତି ଡାକିବାକୁ ।

ହରି ନନା ଆସିଲେ—ପ୍ରଥମେ ସଙ୍କୋଚରେ । ତା ପରେ ସହଜରେ । ତାଙ୍କର ପୁଣି ବିଶ୍ୱାସ ବଦଳିଲା—ଠାକୁରେ ଅଛନ୍ତି । ସେହି ଭଲ ମନ୍ଦ ସବୁ କରନ୍ତି । ପୁଣି ତାଙ୍କର ବିଧବା, ରୋଗିଣୀ ଆଉ କାତର ଲୋକେ ଅଧୀନକୁ ଆସିଲେ ।

ପୁଣି ସଂସାର ସେମିତି ଶୃଙ୍ଖଳାରେ ଚାଲିଲା—ସାହି ଲୋକଙ୍କ ମୁହଁରେ ହସ । ଆଖିରେ ଆଶା । ହରିନନା ଅଛନ୍ତି ।





# ଖେଳ ଓ ଖେଳନା

ଶ୍ରୀ ବିନୋଦ ରାଉତରାୟ

ତୁମେ ଯଦି କେବେ ଏଇ ଫଗୁଣର ଗୋଧୂଳି ଅନ୍ଧାରୁ
ତରଳ ସୁନେଲି ମେଘ ଗ୍ରେଗ୍ରୀକର ଗଢ଼ିବ ଖେଳନା :
ଠିକ୍ ଠିକ୍ ରାଜାପୁଅ ନାଇଥିବ ଜରିର ମୁକୁଟ,
ଛନ ଛନ ରାଜାଝିଅ ଜନ ଜନ ଖଞ୍ଜନ ନୟନା ।

× × × ×

ତା'ପରେ ଅନ୍ଧାର ହେଲେ ଫିଙ୍ଗିଦେବ ଦୂରକୁ ଦୂରକୁ
ଦୁଇଟି ଖେଳନା ଯିବ ଗୁହୁଁ ଗୁହୁଁ ଅନ୍ଧାରରେ ମିଶି,
ଅନାଇ ରହିବ ତମେ ବାତାୟନେ ଅଶୀଦୂର ଥାପି
କେତେବେଳେ ପ୍ରଭାତର ମାଧବୀର ମଧୁଗନ୍ଧା ନିଶି ।

× × × ×

ଉଦୟ କପାଳେ ଯେବେ ଊଷା ଦେବ ସୁନେଲି ଗୋରଚନା
ତମେ ସେଇ ସୁନା ଘେନି ଅଜଥରେ ଗଢ଼ିବ ଖେଳନା :
ଅଜଥରେ ରାଜାପୁଅ ଶିରେ ଦେବ ଜରିର ମୁକୁଟ
ଅଜଥରେ ରାଜାଝିଅ ଛନ ଛନ ଖଞ୍ଜନ ନୟନା ।
ସେତେବେଳେ ତମେ କଣ ପ୍ରିୟତମା ପାରିବ ନିରେଖି
ଅତୀତର ରାଜାପୁଅ ଅଙ୍ଗରାଗ ରାଜାଝିଅ ଦେହେ ?
କପର ଯାଇଛି ମିଶି ରାଜାଝିଅ ଚପଳ ଗୁହାଣୀ
ରାଜାପୁଅ ନୟନରେ ଅବାଞ୍ଛିତ ଅତୁଳ ସେନେହେ ?

ଅନୁଗୁଳ
୧୯୫୯



# ପ୍ରୀତନାମା

★★★

ଶ୍ରୀ ଚିନ୍ତାମଣି ବେହେରା



ସେଦିନ ଈଶ୍ୱର ତୁଚ୍ଛ, ତୁଚ୍ଛ ସ୍ୱର୍ଗ-ସାଧନାର ବାଣୀ
ଦେଖିଲି ତୁମରିଠାରେ ମୋ ଇପ୍‌ସିତ କଳ୍ପନାର ଛବି
ଈଶ୍ୱର-ପ୍ରତିମା କେବେ ବଡ଼ ନୁହେଁ ପ୍ରୀତିରୂପ ଠାରୁ
ମନେ ହେଲା ଗାଇଲି ମୁଁ ସ୍ୱାନ୍ତ-ତାରେ ପ୍ରୀତି ଅଶାବରୀ ।

ତୁମରି କଟାକ୍ଷପାତେ ସୃଷ୍ଟି ହେଲା ଗୀତି-ଶତଦଳ
ରୂପର ସୌରଭେ ତୁମ ଅଙ୍ଗେ ହେଲି ମୁଗ୍ଧ ପ୍ରାଣ-ଅଳି
ତୁମରେ ଈଶ୍ୱର ଭାବ ଦେଇ ହାସ୍ୟ-ଅଶ୍ରୁର ଅଞ୍ଜଳି
ସହସ୍ର ମରଣଠାରୁ ବଳଇ ମୁଁ ପ୍ରୀତି ଶକ୍ତିଶାଳୀ ।

ପ୍ରୀତିର ସାଗର ତଟେ ତୁମେ କିନ୍ତୁ ଛିଡ଼ା ଅଛ ଦମ୍ଭେ
ଉଚ୍ଛ୍ୱସିତ ରୂପ-ଊର୍ମି ଅଙ୍ଗେ ମୋର ଅବଗାହୀ ପ୍ରାଣ
ନେଇଯାଏ ଗୂଢ଼ ସ୍ରୋତେ ଅତଳାନ୍ତ ଗଭୀରତା ମୂଳେ
ଅସହାୟ ବଞ୍ଚିତ ମୁଁ ମୃତ୍ୟୁରେ ମୋ ଶେଷ ପରିତ୍ରାଣ ।

ତଥାପି ଈଶ୍ୱର ପ୍ରେମ ସତ୍ୟ; କିନ୍ତୁ ମିଥ୍ୟା ପ୍ରୀତିନାମା
କ୍ଷମା କର ଦୁର୍ବଳ ମୁଁ, ତୁମକୁ କି କରିଯାଏ କ୍ଷମା ।






# କୋଠା

ଶ୍ରୀ ପ୍ରାଣବନ୍ଧୁ କର

ନରହରି ବାବୁ ହଠାତ୍ ଚେଇଁ ଉଠିଲେ—କଟକରେ କୋଠା ପିଟିବେ—ଯେମିତି ହେଉ ସିଏ କଟକରେ ଖଣ୍ଡେ କୋଠାଘର ତିଆରି କରିବେଇ କରିବେ—ରାମା ଶାମା ଦାମା ସମସ୍ତେ ଆଜିକାଲି କୋଠା କରୁଛନ୍ତି, ଆଉ ସିଏ ପାରିବେନି ? ସନାତନ ତାଙ୍କର ସାଥିରେ ଏକା କ୍ଲାସରେ ପାଠ ପଢ଼ୁଥିଲା । ଅଙ୍କରେ ପନ୍ଦରରୁ ଅଉ ବେଶୀ ପାଇ ପାରିଲାନି···ଶିକ୍ଷକଙ୍କ ଦୟାରୁ କୌଣସି ମତେ ମାଟ୍ରିକ ପରୀକ୍ଷା ଯାଏଁ ଗଲା—ତିନି ଚାରିଥର ଫେଲ ହେଲା ପରେ ପାଶ କରିଗଲା ·· ନରହରି ତାକୁ ପଚାରିଲେ "କଟକରେ ସନା କଲେଜରେ ପଢ଼ୁଛୁଟି ? ସନାତନ ଓଠ ବଙ୍କେଇ କହିଲା, "ଆରେ କଲେଜ···କେମିତି ଖସିଗଲି କହ···ହଇରେ ତୁ ଆସି ବି. ଏ. ପାଶ କରିବାକୁ ବସିଲୁଣି···ଆଉ ମୁଁ ଯାଇଁକରି ଫାଷ୍ଟ୍ୟାର କ୍ଲାସରେ ନାଁ ଲେଖାଇବି ?

ନରହରି ପଚାରିଲେ, "ତେବେ କରିବୁ କ'ଣ ?

ଦେଖିବା ଖଣ୍ଡେ କିରାଣି ଚାକିରି ବାକିରି କେଉଁଠି···

ବନ୍ଧୁ ସନାତନ ପ୍ରତି ନରହରି ବାବୁଙ୍କର ସେ ଦିନ ବହୁତ ବେଶୀ ଦୁଃଖ ହୋଇଥିଲା···

ହେଲେ ସେଇ ସନାତନ କଲେକ୍ଟରୀରେ କିରାଣୀ ହୋଇ ଅଲିସା ବଜାରରେ କେଡ଼େ ସୁନ୍ଦର କୋଠାଟିଏ ତିଆରି କରି ମାରିଲାଣି ! ଏତେ ଟଙ୍କା ପାଇଲା

କେଉଁଠୁ ? ପିଲା ଛୁଆତ ହେଲେ ! ସେମାନଙ୍କୁ ଯୋଗ୍ୟ କରି ଦିଦିଟା ଝିଅଙ୍କୁ



ବାହାସାହା କରି ପାରିଲା ପରେ ବି ତାର କୋଠା ତିଆରି କରିବାକୁ ଟଙ୍କା ଥିଲା । ଖାଲି ସନାତନ ବାବୁଙ୍କ ? ଏ ମହଙ୍ଗା ଦିନରେ ବି କେତେ ଲୋକ କଟକରେ କୋଠା ପିଟିଲେଣି ନରହରିଙ୍କ ଆଖି ଆଗରେ । କିନ୍ତୁ ସେ ଏ କୋଠାଟିଏ ତିଆରି କରି ପାରୁ ନାହାନ୍ତି, ହାତରେ ଖଡ଼ାଟିଏ ବି ନାହିଁ—

ତଥାପି ଏପରି ନିଃସମ୍ବଳ ଅବସ୍ଥାରେ ନରହରି ହଠାତ୍ ସେ ଦିନ ସେଦିଅ ସକାଳୁ ଶେଜରୁ ଉଠି ଠିକ୍ କରି ପକେଇଲେ ଯେ ସେ କୋଠା ତିଆରି କରିବେ ।

ଯିଏ ଶୁଣିଲେ ହସନ୍ତି, ତାଙ୍କ ସିଦ୍ଧାନ୍ତ ଶୁଣି ତାଙ୍କର ସହଧର୍ମିଣୀ ବାସନ୍ତୀ ଦେବୀ ହସି ପକାଇଲେ । କହିଲେ, କୋଠା··· ଆଉ ତମେ ?

ନରହରି ଗମ୍ଭୀର ହୋଇ କହିଲେ ଦେଖିବ ମୁଁ କୋଠା ତିଆରି କରୁଛି କି ନାହିଁ ?

ବାସନ୍ତୀ ଦେବୀ କହିଲେ, "କୋଠା ତିଆରି କରିବା ଲୋକ ନିଆରା । ତମେ କରିବ କୋଠା ? ନରହରି ବାବୁ ସ୍ତ୍ରୀଙ୍କର ମନ୍ତବ୍ୟ ଶୁଣି ଟିକିଏ ବିରକ୍ତ ହୋଇ ଯାଇ କହିଲେ, "ମୁଁ ଯେ ଟଙ୍କା ଜମେଇ ପାରିନି ସେଇଟା ମୋ ଦୋଷ ନାଇଁ ? ତମେତ ଚାଳିଶ ପଚାଶ ବର୍ଷ ହେଲା ସଂସାର ଚଲେଇଲ, ସଞ୍ଚିଲନି ?

ହଁ ଶେଷକୁ ଦୋଷ ମୋର ମୁଣ୍ଡରେ ଲଦା ହେବନିତ ଆଉ କାହାର ? ମାତ୍ର ସେ ତର୍କ ଲୁହା କଥାଗୁଡ଼ା ପକେଇ କିଛି ଲାଭ ନାହିଁ—ଏଇ ଅଳଣା କଥାରେ ସେପରେ ଲାଗିଯିବ ଖଟି ଖଟି ।" କଥା ଶେଷ କରି ବାସନ୍ତୀ ଦେବୀ ସେଠୁ ଗୁଲ୍‌ଯାଉଥିଲେ ନରହରିବାବୁ ତାଙ୍କୁ ଅଟକେଇ ଦେଇ କହିଲେ, "ଶୁଣ, ଆଜିଠୁ ପ୍ରତି ମାସରେ କିଛି କିଛି ଟଙ୍କା ବଞ୍ଚେଇବାକୁ ଚେଷ୍ଟାକର ।"

ବାସନ୍ତୀଦେବୀ କହିଲେ, ମୁଁ ପାରିବିନି—ତମେ ଚେଷ୍ଟାକର ।

ନରହରିବାବୁ ମୂଳରୁ ସେତିକି କରିପାରି ନାହାନ୍ତି—ସେ ସବୁବେଳେ ଖୋଲା ହାତିଆ । ବଡ଼ ଅଫିସ, ତା ସାଙ୍ଗକୁ ଜୁଟିଲେ ବାସନ୍ତୀଦେବୀ ବଡ଼ଘରର ଝିଅ, ଅଡ଼ା ଚଉଡ଼ାରେ ବଢ଼ିଆସିଛନ୍ତି । ଚିପିଚୁପି ଘର ଚଳେଇବା କଅଣ ସେ ଜାଣିନାହାନ୍ତି···

ମୃଙ୍କାର କଲଦାନୁ ନରହର ବାବୁଙ୍କ ପଇସାରେ ସବୁବେଳେ ପର ଲଟିଛୁ··· ଭଲ ଘରେ ରହିବା···ଭଲ ଖାଇବା ଆଉ ଭଲ ପିନ୍ଧିବା ହେଲା ନରହରଙ୍କ ଜୀବନରେ ମନ୍ତ୍ର···

ମୃତ୍ୟୁଞ୍ଜୟାକ ଛୁଅଙ୍କ ସ୍ୱାସ୍ଥ୍ୟ, ପୋଷାକ ବିଷୟରେ ଧର୍ମପ୍ରାଣୀଙ୍କର ସଜାଗ ଦୃଷ୍ଟି ସବୁବେଳେ ରହିଥାଏ···

ଖାଲି ସେତିକି ହୋଇଥିଲେ ବି ନରହରବାବୁ ଟଙ୍କା ସଞ୍ଚିପାରିଥାନ୍ତେ । ତାଙ୍କର ବନ୍ଧାଖର୍ଚ୍ଚ ବାହାରେ ଆଉ କେତେ ବ ଖର୍ଚ୍ଚ ଆସି ପଡ଼ୁଥାଏ—ସେ ସବୁକୁ ଏଡ଼ିଯିବା ସ୍ୱାମୀ ସ୍ତ୍ରୀ କାହାର ପକ୍ଷରେ ସମ୍ଭବ ନୁହେଁ ।

ଭିତରୁ ଗୋଟିଏ ଛୋଟ ଘଟଣାରୁ ନରହର ଓ ତାଙ୍କ ସ୍ତ୍ରୀଙ୍କର ମନର ପରିଚୟ ମିଳିଯିବ ।

ଦିନେ ଗୋଟିଏ ଝିଅ ଗୋଟିଏ ଛୋଟ ଝିଅକୁ ଧରି ଆସି ପହଞ୍ଚିଲା, ନରହରବାବୁ ଠିକ୍ ଅଫିସକୁ ଯିବାକୁ ବାହାରିଲାବେଳେ ।

ବାବୁ ଟିକିଏ ଶୁଣିବେ ?

ନରହରବାବୁ ଅଟକିଯାଇ ପଚାରିଲେ···

"କଅଣ କହୁଛ ?

"ବାବୁ ଏ ଝିଅଟିର ବାପ ହାସପାତାଳରେ ପଡ଼ିଛନ୍ତି···

ତାଙ୍କୁ ଟି. ବି. ହୋଇଛି"

ବାସ୍ ସେଇ ବିପଦ କଥା । ଆଉ ଶୁଣିବା ଦରକାର ପଡ଼ିଲା ନାହିଁ ·· ସେ ସ୍ତ୍ରୀ ଲୋକଟି ସତ କହୁଛି କି ମିଛ କହୁଛି ଜାଣିବା ଦରକାର ମନେ ନ କରି ନରହରବାବୁ ଘର ଭିତରକୁ ଫେରିଯାଇ ବାସନ୍ତୀଙ୍କୁ କହିଲେ· ·

"ବାସ ! ପାଞ୍ଚଟା ଟଙ୍କା ଦେଲ"

"ଟଙ୍କାର ହଠାତ୍ କ'ଣ ଦରକାର ହେଲା ? ଅଫିସରୁ ଯାଉଥିଲ ?" ବାସନ୍ତୀଦେବୀ ପଚାରିଲେ···

"ଗୋଟିଏ ସ୍ତ୍ରୀଲୋକର ସ୍ୱାମୀ ଟି. ବି. ରେ ଭୋଗୁଛି··· । ଅଛି ହାସପାତାଲରେ··· ସ୍ତ୍ରୀଟି ଆସିଛି କିଛି ସାହାଯ୍ୟପାଇଁ ··· ଦେଲ ଦେଇଦି ପାଞ୍ଚଟା ଟଙ୍କା।"

"ଟଙ୍କା କାହିଁ ? ସବୁତ ସରିଲାଣି, ବାକି ବଜାର ଖର୍ଚ୍ଚ କେଇଟା ଟଙ୍କା ପଡ଼ିଛି··· ମାସକୁ କୋଡ଼ିଏ ଦିନ ଯାଇନି···"

"ସେଇଥିରୁ ପାଞ୍ଚଟଙ୍କା ଦିଅ ବାସ—ଦେଲ ଦେଲ ମୋର ଅଫିସ ଡେରି ହୋଇଯାଉଛି" ।

"ଅଗୁ ମୁଁ ଦେଇଦେଉଚି—ତମେ ଯାଅ···ଭଲ ପାଣି ଲଗେଇଚ···ଏମିତ ଦାନ ଧର୍ମରେତ ଟଙ୍କା ଉଡ଼ୁଚି, ଅଉ ମୋ ପିଲାର ଭବିଷ୍ୟତ ଦେଖିବ କିଏ ?"

ନରହରି ସ୍ତ୍ରୀଙ୍କ କଥାରେ କାନ ନ ଦେଇ 'ଦେଇଦେବ' କହି ଅଫିସ ଚାଲିଗଲେ । ଗୁରୁବ ଥୋଇଟା କାନରୁ ଫିଟେଇ ବାସନ୍ତୀଦେବୀ ଅଲମାରୀ ପାଖକୁ ଗଲେ·····

ସନ୍ଧ୍ୟାରେ ଅଫିସରୁ ଫେରି ନରହରି ପଚାରିଲେ, "କଣ ଦେଲଟି ସେ ସ୍ତ୍ରୀଲୋକଟିକୁ ପାଞ୍ଚଟା ଟଙ୍କା ?"

"କିଏଣି ବିଶ୍ୱାସ ହେଉନ ? ରୁକ୍ଷ ଗଳାରେ ବାସନ୍ତୀଦେବୀ ପଚାରିଲେ—

ଯାହାଚଟା କାଢ଼ି କାଢ଼ି ନରହରିବାବୁ କହିଲେ

"ହଳ ଲୁଗଟା ଭୋକ ।" କଅଣ ବଣିତ ଶୀଘ୍ର ଅଣ···

ବାସନ୍ତୀଦେବୀ ଜଳଖିଆ ଆଣି ସ୍ୱାମୀଙ୍କ ପାଖରେ ବଢ଼ାଇ ଦେଇ କହିଲେ

"କୋଉ ପଦରେ ପାଞ୍ଚଟା ଟଙ୍କା ଦେବାକୁ କହିଗଲମ ?

ତମେ ତେବେ ପାଞ୍ଚଗୁଣିଉକ ଦୁଇଟଙ୍କା ଦେଇଚକୁହ" ବାସନ୍ତୀଦେବୀ ହସିପକେଇ କହିଲେ

"ବିଚାରୀ ବଡ଼ ଦୁଃଖୀ—ପାଞ୍ଚପାଞ୍ଚଟା ପିଲାଛୁଆ···ସ୍ୱାମୀ ତାର ସମ୍ବଲପୁରରେ ଓଭରସିଅର ଥିଲା ।

"ସ୍ତ୍ରୀଲୋକଟି ବେଶ୍ ଶିକ୍ଷିତା ମ ··· ମାଟ୍ରିକ୍ ଫେଲ ହେଇଚ । ତା କଥାବାର୍ତ୍ତାରୁ ଜଣାଗଲ ସେଏ ମୋତେ ନିଛ କହୁନ—ଆହା ବିଚାରୀର କେତେ ଦୁଃଖ···" ବାସନ୍ତୀଦେବୀ କହୁ କହୁ ଅଟକିଗଲେ···

ନରହରି କହିଲେ "ହଁ ବିଚାରୀର ବଡ଼ ଦୁଃଖ—ଏମିତ ଦୁଃଖ ଯେ ଆମକୁ କେବେ ନ ପଡ଼ିବ କିଏ କହିବ ? ମୁଁବ ଯଦି ସେମିତ ହେମାର ହୋଇପଡ଼େ··· ବାସନ୍ତୀଦେବୀ ରାଗିଯାଇ ଧଡ଼କିନା ଉଠି ଚାଲିଗଲେ··· ଦୁ' ଦିନଯାଏଁ ଦମ୍ପତୀଙ୍କର କଥା ବନ୍ଦ···

କିନ୍ତୁ କୋଉଁଟିଏ ତାରରେ ଯୋଡ଼ିଠି ଦୁଇଟି ହୃଦୟ ଗୁନ୍ଥା ହୋଇଚ ସେଠି ଏମିତ ମାନ ଅଭିମାନ ତ ପ୍ରୀତିକର···

ମାସର ପାଞ୍ଚଦିନ ଆଗରୁ ଗୃହିଣୀ ସତର୍କବାଣୀ ଶୁଣାଇଦେଲେ ଗୃହକର୍ତ୍ତାଙ୍କୁ ·····

ମୁଣ୍ଡ ହଲେଇ ନରହରିବାବୁ କହିଲେ—"ମୁଁ କୋଉଠୁ ଧାର-ଉଧାର ଆଣିପାରିବିନି··· ବଜେଟ ଅନୁଯାୟୀ ତମେ ଖର୍ଚ୍ଚ କରିବନି··· ଆଉ ମୁଁ ଧାର କରି କରି ମରୁଥିବି ?"

"ଏଁ ବଜେଟ ଅନୁଯାଇ ମୁଁ ଖର୍ଚ୍ଚ କରୁନି ?"

"କରୁଚ ଅଭାବ ପଡନ୍ତ କାହିଁକି ?"

"କୁଳେଇପାରୁନା କାହିଁକି ଅଭାବ ପଡ଼ିଲା ? ଦାନଧର୍ମରେ ବାବୁଙ୍କର କୋଡ଼ିଏ ଖର୍ଚ୍ଚ ହୋଇଚି ଏଇମାସରେ, ଖିଆଲ ଅଛି ?"

ନରହରିବାବୁ ବିଲକୁଲ ଭୁଲିଯାଇଥିଲେ । ଏକଥାରେ ଟିକିଏ ହସି-ଦେଇ କହିଲେ, "ମତେ ଏଥିପାଇଁ ଏକା ଦୋଷୀକରୁଚ କାହିଁକି ବାସ ? ମୁଁ ପାଞ୍ଚ ଦେଲାବେଳକୁ ତମେତ ଦଶ···" ହଉ ମୁଣ୍ଡ ଖରାପ କରିବା ଦରକାର ନାହିଁ···ଆଣିଦେବି ଟଙ୍କା···"

ତହିଁଆରମାସଠୁ ମାସିକ ବଜେଟରେ ସେଇ ସ୍ତ୍ରୀଲୋକଟି ପାଇଁ ଢେନୋଟି ଟଙ୍କା ସ୍ଥାନ ପାଇଲା—

ଖାଲି ଯେ ନରହରି ଅଉ ବାସନ୍ତୀ ଖୋଜାହୋଇଥା ତା' ନୁହେଁ··· ଯଥା ସାଧ୍ୟା ତଥାକ୍ରି···

ଗୃହଟାଯାକୁ ଗୃହଟାଯାକ ଛୁଆ ·· ତାଙ୍କ କ୍ଲାସର ଗରିବ ପାଙ୍ଗ ପିଲଙ୍କୁ ସାହାଯ୍ୟ କରିବା ପାଇଁ ମା'ଠୁ ଗୁଲ ଗୁଲ କରି ପଇସା ବୋହ୍ନ ନେଇ-ଯାନ୍ତି ।

ସୁତରାଂ କୋଡ଼ିଏବର୍ଷ ହେଲା ଗୃହକର୍ତ୍ତା କରି, ମୋଟା ଦରମା ପାଇ ନରହରିବାବୁ ଯେ କଟକରେ କୋଠା ପିଟି ପାରି ନାହାନ୍ତି ଏଥିରେ ଆଉ ବିସ୍ମିତ ହେବାର କଅଣ ଅଛି ?

କିନ୍ତୁ ଆଜ କୁମ୍ଭକର୍ଣ୍ଣ ଛ'ମାସପରେ ନିଦରୁ ଉଠି ଖାଇବା ପାଇଁ ହାଉ ହାଉ ହେଲଭଳି ନରହରିବାବୁ କୋଠା ତିଆରି କରିବା ପାଇଁ ହାଉ ହାଉ ହେଉଛନ୍ତି ।

ତାଙ୍କ ମୁଣ୍ଡରେ କଥାଟା ଖୁବ୍ ଅଣ୍ଟକରି ବସିଯାଇଚି···ସେଥିରୁ ମୁକ୍ତି ନାହିଁ ।

ସେ ହିସାବ କଲେ···କୋଡ଼ିଏ ବର୍ଷରେ ମାସକୁ ହାରାହାରି ପଚିଶ ଟଙ୍କା ହିସାବରେ ବାରହଜାର ଟଙ୍କା ଉପରେ ଗଣି ସାରିଲେଣି—ନାଃ ଆଉ ନୁହେଁ— ତୁଳସୀପୁରର ଅଠଗୁଣ୍ଠ ଜମିରେ ଘର ନିଶ୍ଚୟ ତିଆରି ହବ ।

ଠିକାର ଦୋଷ ନାହିଁ··· କିନ୍ତୁ ନରହରିବାବୁ ସହରର ସବୁ ବଡ଼ ବଡ଼ କଣ୍ଟ୍ରାକ୍ଟର ଆଉ ବାଲିଙ୍ଗ ଇଂଜିନିୟରଙ୍କ ପାଖକୁ ଦୌଡ଼ିବାକୁ ଆରମ୍ଭ କରିଦେଲେ ·· କିଏ କେତେ ପ୍ରକାର ପ୍ଲାନ ବତେଇଲା ଘର ପାଇଁ— କମ୍ ପଇସାରେ ଖୁବ୍ ସୁନ୍ଦର ଘର କରିବା ପାଇଁ ନରହରି ବ୍ୟସ୍ତ ।

କୋଠାର ସ୍ୱପ୍ନ ପରେ ସ୍ୱପ୍ନ ସେ ଦେଖି ଚାଲିଲେ·· ଦିନେ କଲେଜରୁ ଫେରି ବଡ଼ପୁଅ ବାସନ୍ତୀ ଦେବୀଙ୍କୁ ପଚାରିଲା, "ବୋଉ, ବାପା ଅଫିସରୁ ଫେରି ଜଳଖିଆ ଖାଇ ଚାଲି ଯାଇଛନ୍ତି ?" ବାସନ୍ତୀଦେବୀ ପୁଅର ଏ ପ୍ରକାର ପ୍ରଶ୍ନରେ ଟିକିଏ ବିବ୍ରତ ହୋଇଯାଇ କହିଲେ—

"ନା, ବାପା ଅଫିସରୁ ଫେରି ନାହାନ୍ତି ।

କାହିଁକି ? କଅଣ ହେଲାକି ?"

ମୁଁ ଫେରିଲାବେଳେ ଦେଖିଲି ପିଠାପୁରରେ ଗୋଟିଏ ବଡ଼ ନୂଆ କୋଠା ତିଆରି ଚାଲିଛି— ଆଉ ତାରି ସାମନାରେ ବାପା ଏବଂ ଆଉଜଣେ କିଏ ଭଦ୍ରଲୋକ ବସି ଗପ କରୁଛନ୍ତି—

ବାସନ୍ତୀ କହିଲେ, "ତୋ ବାପାଙ୍କ ମୁଣ୍ଡ ବିଗିଡ଼ି ଗଲାଣି···କୋଠା କୋଠା କରି ତାଙ୍କର ଖାଇବା ଶୋଇବା ସବୁ ବନ୍ଦ ହୋଇ ଗଲାଣି···

ପ୍ରାୟ ସନ୍ଧ୍ୟା ସାତଟା ବେଳକୁ ନରହରି ବାବୁ ସେଦିନ ଘରକୁ ଫେରିଲେ···ବାସନ୍ତୀ ଖିଙ୍କାରି ହୋଇ କହିଲେ,

"କୁଆଡ଼େ ଥିଲ ଏତେବେଳ ଯାଏଁ ?"

ନିରୁଦ୍‌ବିଗ୍ନ ଗଳାରେ ନରହରି ବାବୁ କହିଲେ,

"ଟିକିଏ କାମ ଥିଲା ଦେଲି ଦେଲି କଅଣ ଖାଇବାକୁ ରଖିଚ"

"କିଛି ନାହିଁ, ଇଟା, ଚୂନ, ସୁରକିରେ ତ ପେଟ ପୂରି ଯାଇଥିବ··· ଆଉ ଫେରି ଖାଇବାକୁ ମାଗୁଚ କଅଣ ?"

ନରହରି ବାବୁ କିଛି ବୁଝି ପାରିଲେ ନାହିଁ···ପଚାରିଲେ··

"କଥା କଅଣ ବାସ ? ଏମିତି ରାଗୁଚ କିଆଁ" ? "ବାସନ୍ତୀ କହିଲେ, "ଖା ପିଅ ଭୁଲି ତମକୁ କୋଠା ତିଆରି ଭୂତ ଲାଗିଚି, ରାଗିବିନି ? ଯାଇଁ କୋଉ ପିଠାପୁରରେ କାହା କୋଠା ତିଆରି ଦେଖୁଚ ବସି ।" "ବାବୁ କମ ଦେଖି ଅସି କହୁଚି ବୋଧ ହୁଏ ।

"ଏଇଟା ଗୋଟାଏ କଅଣ ଖରାପ କଥା ? ପିଲା ଛୁଆଙ୍କ ମୁଣ୍ଡ ଗୁଞ୍ଜିବା ପାଇଁ ନିଜର ବୋଲି ଖଣ୍ଡେ ଘର ନାହିଁ ମୁଁ ଆଖି ବୁଜିଲେ ପିଲାଏ ଲୁଚିବେ କଅଣ ।"

"ଏ ମହଙ୍ଗା ଦିନରେ କୋଠା କରିବା ନିଶା କାହିଁକି ଲାଗିଛି ଶୁଣେଁ ? ଶସ୍ତା ଦିନରେ ତ ଏ କଥା ଭାବିଲନି—ଏବେ ପିଲାଙ୍କୁଅଙ୍କ ପାଠ, ଧନ୍ଦଟା ଝିଅଙ୍କର ବାହାଘର···ଏ ସବୁଥିପେଇଁ ଟଙ୍କା କୋଉଠୁ ଆସିବ ଯଦି କୋଠା ତିଆରି କର ?

ନରହରି ବାବୁ ଏ କଥାର କିଛି ଉତ୍ତର ଦେଇ ପାରିଲେ ନି···ଦିନ ଚାଲି ଗଲା···କୋଠା ତିଆରିର ନିଶା ଯେତିକି ବଢ଼ିଲା ସେତିକି ସେତିକି ନରହରି ସଂସାରର ଅନ୍ୟାନ୍ୟ କଥାରୁ ନିଜକୁ ଅଲଗେଇ ରଖିଲେ-ସ୍ତ୍ରୀଙ୍କୁ ନ ଜଣେଇ ସରକାରଙ୍କଠାରୁ କୋଠା ତିଆରି ପାଇଁ ଋଣ ନେଇ ଆସି ବ୍ୟାଙ୍କରେ ଜମା କଲେ···ପ୍ରାଇଭେଟ ବ୍ୟାଙ୍କରୁ ମଧ୍ୟ ଟଙ୍କା କରଜ କରି ଜମା ରଖିଲେ ବନ୍ଧୁମାନେ ଉପଦେଶ ଦେଲେ—କୋଠା କାମ ଆରମ୍ଭ କରିଦେଲେ ଟଙ୍କା ଆପେ ଆପେ କୋଉଠୁ ଆସିଯିବ ଶୁଭବେଳା ଦେଖି ନରହରି ନିଅଁ ଖୋଳେଇଲେ···ଇଟା ସିମିଣ୍ଟି କିଣି ଜମେଇଲେ···ବଡ଼ ଭୋରରୁ ଉଠି କାମ ଉପରକୁ ଗଲେ··ନିଜେ ତଦାରଖ ନ କଲେ ଠିକା ଯିବ—କେବଳ ଅଫିସ ଆଉ ବିଛଣାରେ ଶୋଇବା ସମୟତକ ଛାଡ଼ିଦେଲେ ନରହରିଙ୍କୁ ଆମେ ଆଉ କୋଉଠି ଦେଖିବାନି···

ସ୍ୱାମୀ କୋଠା ତିଆରିବାକୁ ବଦ୍ଧ ପରିକର । କରଜ ଦାମ କରି କାମ ଆରମ୍ଭ କରି ଦେଲେଣି, ପ୍ରତିଜ୍ଞା କରିବାର ଗୋଟାଏ ବର୍ଷ ଭିତରେ କୋଠାର ସ୍ୱପ୍ନ ଯେ ବାସ୍ତବ ରୂପ ଧରିବ ଏ କଥା ବାସନ୍ତୀ ଦେବୀ ବିଶ୍ୱାସ କରୁ ନଥିଲେ ।

କିନ୍ତୁ ମନେ ମନେ ସେ ଆତଙ୍କିତ ହୋଇ ଉଠୁଥିଲେ । ପିଲାଙ୍କୁଅଙ୍କ ଭବିଷ୍ୟତକୁ ଜଳାଞ୍ଜଳି ଦେଇ ଶେଷକୁ ସର୍ବସ୍ୱାନ୍ତ ହବାକୁ ବସିଛନ୍ତି ।

ନରହରି ବାବୁ ବଡ଼ ଅଜଡ଼ ବାଗିଆ ଲୋକ ଯାହା ବୁଝିଥିବେ ସେଇୟା-ଘରତିଆରି ପାଇଁ ଟଙ୍କା ଅଭାବ ହେଲେ ଶେଷକୁ ଯେ ସ୍ତ୍ରୀଙ୍କର ଗହଣାତକ ବିକି ନ ହେବ ଏ କଥା ବା କିଏ କହିବ ? ଘର ଅଣ୍ଟାଏ ଉଚ୍ଚ ଉଠି ଗଲାଣି ଏତିକିରେ ପ୍ରାୟ ସାତ ଆଠ ହଜାର ଟଙ୍କା ଉଡ଼ି ଗଲାଣି··· ହାତରେ ଆଉ ପୁଞ୍ଜି ମାତ୍ର ତିନିହଜାର···ବେଳ ଥାଉଁ ପେର ଟଙ୍କା ଯୋଗାଡ଼ କରିବାକୁ ପଡ଼ିବ···କୋଠାର ଅଟକଳ ହୋଇଛି ତିରିଶ ହଜାର

ଚିନ୍ତିତ ହୋଇ ପଚାରିଲେ "ବାପ୍, କଅଣ କରିବା ? ଆଉ ଦିନ କେଇଟାରେ ତ ଏତକ ସରିଯିବ" ।

ନରହରିଙ୍କ ପ୍ରତି କୌଣସି ସହାନୁଭୂତି ନ ଦେଖେଇ ବାସନ୍ତୀ ଦେବୀ କହିଲେ, "ମୁଁ କ ଜାଣେ···ଟଙ୍କା କୋଉଠୁ ଅସିବ ତା ନ ଜାଣି କଅଣ ଏଥିରେ ତମେ ହାତ ଦେଇଚ ?

ନରହରି ବାବୁ କଅଣ କହିବାକୁ ଯାଉଥିଲେ ବଡ଼ ପୁଅ ବିକ୍ରମ ପ୍ରବେଶ କରି ସେଠି ଚୁପ୍ ହୋଇ ଠିଆ ହେଲା ବିକ୍ରମ ପଦାର୍ଥ ବିଜ୍ଞାନରେ ପ୍ରଥମ ଶ୍ରେଣୀରେ ପ୍ରଥମ--

ନରହରି ବାବୁ ପଚାରିଲେ "କାରେ କଅଣ କହିବୁ ? ବିକ୍ରମ କହିଲା "ମୋର ସେଇ ଜର୍ମାନ ସ୍କଲରସିପଟା ହୋଇଗଲା ବାପା···ଦୁ' ବର୍ଷ ପାଇଁ···।"

ଖୁସି ହୋଇ ନରହରି କହିଲେ "ବାଃ, ଖୁବ୍ ଭଲ ହେଲା ବାପା ବିକ୍ରମ । ମେଟାଲର୍ଜିରେ ଏମ୍ ଏସ, ପାଶ କରି ଫେରିଲେ ଭାରତରେ ଖଟେଖ ବଡ଼ ଚାକିରି ମିଳିବ —

ବିକ୍ରମ କହିଲା "କିନ୍ତୁ ବାପା ଯାଉଚି ଯେତେବେଳେ ପି. ଏଚ୍‌ଡି ଟା ନ ନେଇ ଫେରିବିନି ।" ଉଚ୍ଛ୍ୱସିତ ହୋଇ ନରହରି ବାବୁ କହିଲେ—"ବେଶ ଭଲ କଥା, କିଏ ନାହିଁ କରୁଚି ?···"

"ସେଥିପାଇଁ ଆଉ ବର୍ଷେ ଅଧିକା ରହିବାକୁ ପଡ଼ିବ ବାପା"

ନରହରି ବାବୁ କହିଲେ--"ହଁ ହଁ ରହିବୁ ମୋର କିଛି ଆପତ୍ତି ନାହିଁ···"

"କିନ୍ତୁ ସେ ବର୍ଷଟା ହାତରୁ ଖର୍ଚ୍ଚ କରି ପଢ଼ିବାକୁ ପଡ଼ିବ" ନରହରି ବାବୁଙ୍କର ମୁହଁ ଶୁଖି ଆସିଲା । କହିଲେ "ହାତରୁ ?କେତେ ଟଙ୍କା ଲାଗିବ ?"

ବିକ୍ରମ କହିଲା "ପ୍ରାୟ ପାଖି ଛ ହଜାର ଟଙ୍କା"

ବିମର୍ଷ ହୋଇ ନରହରି ବାବୁ କହିଲେ "ଏତେ ଗୁଡ଼ାଏ ଟଙ୍କା ମୁଁ ଏବେ ତତେ ଦେବି କୋଉଠୁ ?···ଘର ଉଆରି କରି ତ ସର୍ବସ୍ୱାନ୍ତ ହେବାକୁ ବସିଲିଣି"

ସ୍କଲରସିପ୍ ଟଙ୍କାରେ ଯେତକ ସେତକ ହେଲା । ପଢ଼ି କରି ଫେରିଆ ତେବେ ମୋର ଶକ୍ତି ନାହିଁ । ଏତେ ଗୁଡ଼ାଏ ଟଙ୍କା ଦେବାକୁ·· ।"

ବାସନ୍ତୀ ଦେବୀ କ୍ରୋଧରେ ଅନ୍ୟଆଡ଼େ ମୁହଁ ଘୁରେଇ ନେଲେ···
ବିକ୍ରମ 'ହଉତେବେ' କହି ଘରୁ ବାହାରି ଚାଲିଗଲା···

କିପରି ଗୋଟିଏ ଅସ୍ୱସ୍ତିକର ନିସ୍ତବ୍ଧତା ନରହରିଙ୍କୁ ପୀଡ଼ା ଦେଲା ·· ତାଙ୍କର ନିଜର ଏ ସିଦ୍ଧାନ୍ତରେ ସେ ନିଜେ ଯେପରି ଲଜ୍ଜିତ ଆଉ ଦୋଷୀ ବୋଲି ମନେକଲେ···ଚୌକିରୁ ଉଠି ଠିଆ ହୋଇ କିଛି ସମୟ ଘରେ ଚାଲ-ବୁଲ କରି ସାରିଲା ପରେ, କହିଲେ "ବାସ, ପୁଅଟା ମୁହଁସୁଟଖାଇ ଚାଲିଗଲା··

ବାସନ୍ତୀଦେବୀ ଦେବୀ ଟିକିଏ ଆହତ କଣ୍ଠରେ କହିଲେ···

"ସିଏ ଆଉ କଅଣ କରିଥାନ୍ତା ?"

ପୁଣି ଚୌକିରେ ବସିପଡ଼ି ନରହରିବାବୁ କହିଲେ

"ତାକୁ କହ୍ବାଦବ ତାର କିଛି ଚିନ୍ତା କରିବା ଦରକାର ନାହିଁ··· ତାର ପେଟେ ଟଙ୍କା ଅଧିକା ଲାଗିବ ଦଅଯିବ···"

ବାସନ୍ତୀ ବିସ୍ମିତ ହୋଇ ସ୍ୱାମୀଙ୍କ ମୁହଁକୁ ଚାହିଁଲେ

"ଆଉ କୋଠା ?" ବାସନ୍ତୀଦେବୀ ପଚାରିଲେ ଛଳ ଛଳ ଆଖିରେ···

ହସି ହସି ନରହରି ଉତ୍ତର କଲେ —

"କୋଠା ?···ମୋ ଜାତକରେ କୋଠା ତିଆରି ଭାଗ୍ୟ ନାହିଁ ବୋଲି ବାଇକୋଳି ମହାପାତ୍ରେ ହାତକାଟି ଲେଖିଦେଇଛନ୍ତି··· ପୁଅ ଚାକିରି କଲେ କୋଠାର ମୁଣ୍ଡି ମରିବ—ବର୍ତ୍ତମାନ ପାଣି ଖାଇ ଖାଇ ମଜଭୁତ ହେଉଥାଉ···

( ଆକାଶ ବାଣୀ, କଟକଙ୍କ ସୌଜନ୍ୟରୁ )





# ଆଗମନୀ

ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି

ଚଇତ ଚଳିଲେ ବଇଶାଖେ ତୁମେ ଆସିବ
ତୁମ ରୂପାଲୋକେ ଜାଣୁ କୁଟୀର ହସିବ ।
ଛାୟା ସୁଶୀତଳ ବନବୀଥି ତଳେ
ପଲ୍ଲୀ ବଧୂର ଓଢ଼ଣା ଉଡ଼ାଲେ
ଶଂକିତ ପବନେ ସରମ-ଜଡ଼ିତ
ତୁମ ଚନ୍ଦ୍ର ମୁଖ ଦିଶିବ
ଚଇତ ଚଳିଲେ ବଇଶାଖେ ତୁମେ ଆସିବ । ୧ ।



ସେଦିନ ସମୀର ବହୁଥିବ ଗ୍ରାମ ଗହନେ
ତୁମେଇ ଆସିବ ଶଂକିତ ମୃଦୁ ଚରଣେ
ଅଳକାର ରେଖା ଥିବ ପଦଯୁଗେ
ରଞ୍ଜି ହୃଦୟ ନବ ଅନୁରାଗେ
ଶଂଖ ମହୁରୀ ନହବତ ତାନେ
ବହୁ ପ୍ରିୟଜନ ଗହଣେ
ତୁମେଇ ଆସିବ ଶଂକିତ ମୃଦୁ ଚରଣେ । ୨ ।

କୁଶଭଦ୍ରାର ପୁଲିନେ ନିବେଶି ପସୂର
ତୀର ବନଭୂମି କରିବ ମୁଗ୍‌ଧ ମଧୁର
ଦେଖିବ ତୁମର ନବରୂପ ଶିରୀ
ପୁଲକେ ଉଠିବ ଅନ୍ତର ଭରି
ଭାବୁଛୁ କେ'ନେବ ତୁମ ହାତ ଧରି
ଗୃହକଣେ ନିକ ମୋହର
କୁଶଭଦ୍ରାର ପୁଳିନେ ଥାପିଲେ ପସୂର୍ । ୩ ।

ବାଂଛୁଛା ଅଗୋ ପ୍ରିୟତମା ନବ କିଶୋରୀ
ବଧୂରୂପେ ଯେବେ ମଣ୍ଡିବ ଗୃହ ଆମରି
ପର୍ଶ୍ବରେ ସହସା ଦେଖିବ ଯେବେଳେ
ପ୍ରଥମ-ପଲ୍‌କ ପରଶର କାଳେ
ହାତେ ହାତ ଯାର ରଖିଅଛ ତମେ
ସେ ନିଶ୍ଚି ଯୋଗ୍ୟ ତୁମର ।
ବାଂଛୁଛା ଅଗୋ ପ୍ରିୟତମା ନବକିଶୋରୀ । ୪ ।

ନୟନରେ ତୁମ ନିଶାର ଗହନ ସ୍ୱପନ
ସୁଗଠିତ ତନୁ ସୁଶ୍ରୀ ଲଳିତ ଲପନ
କେଉଁ ଅଜଣାର ଅନ୍ଧ୍ୱନେ ତମେ
ନିମିଶେ ଭୁଲାଇ ନେଇଛ କେ'ଜାଣେ
ପରିଣତ ତାର ସ୍ୱୀକୃତ ମମ
ନବ-ବଂଧନ ବରଣ
ନୟନରେ ତୁମ ନିଶାର ଗହନ ସ୍ୱପନ । ୫ ।

କିନ୍ତୁ ତୁମେ କି ବୁଝିବ ମୋ ହୃଦ ବେଦନା
ଝଡ଼ ଝଂକାରେ ଯେ କରୁଛି ଗୀତ ରଚନା !
ଧର୍ମଜୟ ଯାର ପରମ ଭୂଷଣ
ବଂଶର ଶିର ପଙ୍ଗୁ ଚରଣ
କ୍ଷତ ଦାଗ ଯାର ଲାଞ୍ଛନା ଏବେବି
ଯୋଗ୍ୟେକି ସେହୁ ଗଣନା ।
କିନ୍ତୁ ତୁମେକି ବୁଝିବ ମୋହୃଦ ବେଦନା । ୬ ।

ଚଇତ ସଂଜେ ଯେ ଫୁଲଟି ପଡ଼େ ମଉଳି
ଯେ ଗୀତଟି ମରେ ନୟନର ନୀରେ ଝାଉଳି
ସ୍ୱର୍ଣ ଦେହର ସ୍ୱପ୍ନ ବରଣେ
ଜୀର୍ଣ୍ଣ ମଳିନ  ପୀଡ଼ିତ ମରମେ
ଯେ ଗୀତଟି ଫୁଟେ ଦେଖିଛୁ ତା ଖାଲି
ଭୁଲିଛୁ କୋକିଳ କାକଳୀ
ଚଇତ ସଂଜେ ଯେ ଫୁଲଟି ପଡ଼େ ମଉଳି । ୭ ।

ସୁନ୍ଦର ଏଇ ଧରଣୀରେ ମୁଁ ତ ଦେଖିନି
ସୁଷମାର ମଧୁ ସମାରୋହ ଖାଲି ସଜନୀ
ଦେଖିଛି ମୁଁ ଶତ ନୀଚ ପ୍ରତାରଣା
ବହୁ ଅବଗୁର ଘୃଣ୍ୟ ଧାରଣା
ଶୋଷଣ ପୀଡ଼ନ ପଶୁ ମଣିଷର
ହତ୍ୟା କଳୁଷ କାହାଣୀ
ସୁନ୍ଦର ଏଇ ଧରଣୀରେ ସବୁ ସଜନୀ । ୮ ।

ତୁମେକି ଦେଖିବ ଜୀର୍ଣ୍ଣ ମୋ ଗୃହ ଉହାଡ଼େ
ଅଶିବ, ଅଭି, ମୁମୂର୍ଷ ବ୍ୟଥା କୁହୁକେ
ଅନଟନେ ଯାଏ ମଣିଷ ଭଲକୁ
ଅଭାବର କପର ଫାଟିଯାଏ ବୁକୁ
ମୃତ୍ୟୁର ଶଠ ହୀନ ବିଭୀଷିକା
ଜୀବନର ଗତ ନାବାରେ
ତମେ ଦେଖିବତ ଜୀର୍ଣ୍ଣ ମୋ ଗୃହ ଉହାଡ଼େ । ୯ ।

ଆଜ ସେଇ କଥା ନିଶ୍ଚୟ ଜାଣିଥିବତ
ଏ ଦେଶର କୋଟି ଭାଇଭଲେ ଦେହୁ ରକତ
ଗଢେ ଏ ଜାତି ଭକତ ତାହାର
ଲଲାଟେ ଲେଖିଛି ତିଳକ ଉପର
ଯୁଦ୍ଧର ଘୋରତର ବିଭୀଷିକା!
ସବୁପରି କାଳିକାରତ
ନ ଜାଣିଛ କିଏ ? ନିଶ୍ଚୟ ଜାଣିଥିବାତ । ୧୦ ।

ଯୁଦ୍ଧ ପରେ ବି ଯୁଦ୍ଧର ଶେଷ ହେଉନି
ବାଂଚିବା ତୃଷା ଦୁର୍ବହ ଆଜି ସଜନୀ
ଘୂର୍ଣ୍ଣି ଜଟିଳ ବହୁ ଦ୍ୱନ୍ଦ୍ୱର
ମୃତ୍ୟୁ-ପୀଡ଼ିତ ଜୀବ ଯାତ୍ରାର
ଅର୍ଥ ତ୍ରୁଟି ନ ଶୁଣେ ଆଜି ବନ୍ଧୁ
ବାଦ ବିରୋଧର କାହାଣୀ
ଯୁଦ୍ଧ ପରେ ବି ଯୁଦ୍ଧର ଶେଷ-ହେଉନି । ୧୧ ।

ଜୀବନର ଏଇ ଛକପରେ ଆଜି ନୀରବେ
ସନ୍ଧିସ୍ଥାନ ମୁଁ ଲଭେ ଯେବେ ଏଇ ଅବସରେ
ତମେ ଦେବ ମତେ ନବ ସନ୍ଧାନ
ଉଚ୍ଛ୍ୱାସ ଆଶା ସିକ୍ତ ପରାଣ
କଲ୍ୟାଣୀ ଆଜି ରଂଜି ମାନସ
ତୁମ ସଂଗୀତ ବିଭବେ
ପଦ୍ମାର ତୀରେ ଆଗମନୀ ରଚେ ନୀରବେ । ୧୨ ।





# ଆ ଘା ତ

ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ



ବନ୍ଧୁ ହେ ତମେ କୁହଁ କି ପାରିବ
ଜୀବନ ମାର୍ଗ ମୋର,
ଗଢି ଦବର କିଆଁ ଦୁର୍ବାର ଅଶ୍ରୁଧାରେ ?
ଆଜି କାହିଁ ପାଇଁ
ସତ୍ୟ ଆହତ ସର୍ପପରି ମୁଁ
ଦୁନିଆର ବୁକେ ତୀବ୍ର ଆଘାତ ହାଣେ ?
ସ୍ନିଗ୍ଧ ସରଳ ପ୍ରୀତିବାଣୀରୁ ମୋର ବାହ୍ନିକ ଅନଳ କଣା
ଉଦ୍‌ଗତ ହୁଏ ଅବାରିତେ ଆଜି
ବନ୍ଧୁ ତମରି ଜଣା ?

ପୁଷ୍କରିଣୀର ନିସ୍ତଳ ଜଳେ ଅଳ୍ପ ଆଘାତ ଦେଲେ,
ଲୋଳ କଲ୍ଲୋଳ ଗଢିର ପରିଧି
ଅତି ମନୋଲୋଭେ ଖେଳେ ।
ଅଙ୍ଗୁଳି ଘାତେ ବନ୍ଧୁ ହେ ସେହିପରି,
ମୂକ ବୀଣା ତାରେ ମୂର୍ଚ୍ଛନା ଉଠେ ଭରି ।
ଅନ୍ତର ବନ୍ଧୁ ତମେ ପାରିଥିବ ବୁଝି,
ହୃଦେ ଆଘାତିଲେ
ଛନ୍ଦ ତନ୍ତ୍ର ଶୁଭେ
ପ୍ରଣୟର ପ୍ରତିଧ୍ୱନି ।

ଅଘାତେ ସୃଷ୍ଟି ସୁନ୍ଦର ହୁଏ
ଦୃଷ୍ଟିରେ ମନୋହର
ଅନାଘାତ ଯହିଁ
ମିଳେ ଖାଲି ତହିଁ
ଉପହାସ ଆଉ ଅବହେଳା ଅନାଦର ।

ବନ୍ଧୁ ହେ ମୁଁ ତ ଅଘାତ ଦେଇନି
ଜୀବନେ କାହାକୁ କାହିଁ,
ଅବହେଳା ଆଉ ଚିର ଉପହାସ
ପାଇଅଛୁ ସେଥିପାଇଁ ।
ଛଳ ଛଳ କରି ଜୀବନର ସୁଖ ଦଳି
ଅନ୍ୟର ସୁଖ ସମ୍ପଦ ଆଣେ ତାହାରେ ଦେଇଛ ବଳି ।



ବାସ୍ତବ ଏହି ଜୀବନକୁ ହାୟ ସଜାଡ଼ି ଦେବାର ଲାଗି,
ମନ ତଳେ ତଳେ
ଆଜି ଦୁର୍ବାର ମନୋରଥ ଉଠେ ଜାଗି ।
ତେଣୁ ଦୁନିଆକୁ ଯୋଡ଼ି ଆଜି ମୁଁ ଅଘାତ ହାଣୁଛି
ବନ୍ଧୁର ଚଲାପଥେ,
ନିଜେ ବି ସେପରି ଆହତ ହେଉଛି
ଧରି ସୁନ୍ଦର କରିବାର ମନୋରଥେ ।







# ଜୟ ଶଙ୍ଖ

ଡକ୍‌ଟର ବ୍ରଜେଶ୍ୱରୀ ଦଳବେହେରା



ହସୁଥିଲା କସ୍ତୁରୀ···

ତୃପ୍ତିର ହସ—ସାର୍ଥକତାର ହସ—ବତିଶି ବର୍ଷ ଜୀବନରେ ପ୍ରଥମ ଥର ପାଇଁ ପ୍ରାଣ ଖୋଲି ହସ···ହସି ହସି ଲୋଟି ପଡ଼ୁଥିଲା ସେ—ମନରେ ତାର ଆଜି ଜୁଆର ଉଠିଛି—ଆନନ୍ଦର ଜୁଆର···ଅଭିମାନର ଜୁଆର···ସେ ଜୁଆର ଆଜି ମାନିବନି ମନର କୌଣସି ବନ୍ଧନକୁ—ଭାବନା ତାର ଆଜି ସୀମାବଦ୍ଧ ନୁହେଁ— ବିସ୍ତୃତ···

ଦର୍ପଣରେ ନିଜର ପ୍ରତିବିମ୍ବ ପ୍ରତିଫଳିତ ହେଉଛି—ଦେଖୁଥିଲା କସ୍ତୁରୀ ଅନୁଭବ କରୁଥିଲା···ନିଜ ଭିତରେ ପ୍ରତିଫଳିତ ହେଉଛି ଷୋଳ ବରଷର ସୁଲେଖା ଦେହ ଭିତରେ ଆତ୍ମାର ସୃଷ୍ଟି ଯେମିତି···କାୟା ସାଥିରେ ଛାୟାର···

ସୁଲେଖା—ତା'ର ଝିଅ—ତା ବୁକୁ ତଳର ରକ୍ତ ନିଗାଡ଼ି ନେଇ ଯିଏ ଆଜି ମଣିଷ ହୋଇଛି—ତା ଶୂନ୍ୟ କୋଳକୁ ଯିଏ ପୂର୍ଣ୍ଣ କରିଛି, ଷୋଳଟି ବସନ୍ତ ଧରି ଯାହାକୁ ସେ ପଣତ କାନି ତଳେ ବାନ୍ଧି ରଖିବାକୁ ଚାହିଁଛି-ସେ ପୁଣି ଆଜି ଅଳି କରୁଛି···ମୁଁ ପ୍ରଣବକୁ ଭଲପାଏ···ମୁଁ ପ୍ରଣବକୁ ଚାହେଁ···

ପାଗଳି ! ହସିଲା କସ୍ତୁରୀ···ଦୂର ଆକାଶର ଜହ୍ନମାମୁଁ ସାଥିରେ ଖେଳିବାର ଅଳିଠାରୁ ଏ ଅଳିର ପାର୍ଥକ୍ୟ ଯେମିତି କିଛି ନାହିଁ ତା ପାଖେ— ଆଜିର ସୁଲେଖା ଭିତରେ ଗୁମୁରି ଉଠୁଛି ଷୋଳ ବରଷ ତଳର ଶିଶୁ···ମନେ ପଡ଼ୁଛି ନିଜର ଷୋଳ ବରଷ ତଳର ମାତୃତ୍ୱ—

ଅନ୍ତଃସତ୍ତ୍ୱା ସେତେବେଳେ ସେ···ବେଦନାକାତର ଶୀର୍ଣ୍ଣ ଦେହକୁ ତାର ଯେତେବେଳେ ଖଟ ଉପରେ ତୋଳି ଦେଉଥିଲେ ନର୍ସମାନେ ଆହତ ହରିଣୀପରି ଚିତ୍କାର କରି ଉଠିଥିଲା ସେ ଦୁ' ହାତରେ ନିଜ ଆଖି ଦିଟାକୁ ଚାପି ଦେଉଥିଲା ଅଶୋକ··· ତାର ସ୍ୱାମୀ ମଥାଟାଙ୍କ ବଳି ବି ଦେଇ ଦେହ ତାର ଥରି ଉଠିଥିଲା ଅଶୁଭ ଆଶଙ୍କାରେ—

ମନ ନାହିଁ କିନ୍ତୁ କସ୍ତୁରୀ—ମାତୃତ୍ୱ ତାର ଜାଗି ଉଠିଥିଲା ଦ୍ରୁତ ଶୀଘ୍ରରେ— ନର୍ସ ଆସି ଖବର ଦେଇଗଲା— ଝିଅଟିଏ— ଭାରି ସୁନ୍ଦର ହୋଇଛି···

ସାର୍ଥକତାର ଆନନ୍ଦରେ ଆଖି ବୁଜିଥିଲା କସ୍ତୁରୀ···

ଦୋଷୀ ଭଳି ଘର ଭିତରକୁ ପଶିଥିଲା ଅଶୋକ···ଅସହାୟ ଭଳି ଚାହିଁ ରହିଥିଲା କସ୍ତୁରୀର କାନ୍ତ ମୁହଁକୁ··

ହସିଥିଲା କସ୍ତୁରୀ—ବିଜୟର ହସ—ତମେ ଖୁସି ହୋଇ ନ ?

ନିଃସ୍ୱ ଆହ୍ଲାଦରେ ପାଖକୁ ଲାଗି ଆସିଲା ଅଶୋକ···

ଅଚ୍ଛା ମୁଁ ଯଦି ମରିଯାଇଥାନ୍ତି ? କସ୍ତୁରୀର କଣ୍ଠରେ ଅଭିମାନ—

ନାଁ—ତମକୁ ମରିବାକୁ ମୁଁ ଦେଇ ନ ଥାନ୍ତି—ବେଗଣି ସ୍ତ୍ରୀର ସେଟୁଆ କପାଳ ଉପରେ ହାତ ବୁଲେଇ ଆଣିଲା ଅଶୋକ—ମୋ ସନ୍ତାନର ମାତୃତ୍ୱ ରୂପ ପାଇଛି ତମଠେଇଁ—ସେ ମାତୃତ୍ୱ ତ ମରିବାର ନୁହେଁ ?

× × × ×

ଠିକ୍ କହିଥିଲା ଅଶୋକ ସେଦିନ—ବତିଶି ବରଷର ପ୍ରତିଶ୍ରୁତି କସ୍ତୁରୀର ମାତୃତ୍ୱ ଷୋଳ ବରଷର ସୁଲେଖା ଭିତରେ ଖାଲି ଜୀଇଁ ରହିନାହିଁ, ବିକାଶ ହୋଇଛି ନୂତନ ରୂପ ନେଇ—

ସୁଲେଖା···ଆଧୁନିକା···

ବିଂଶ ଶତାବ୍ଦୀର ଯନ୍ତ୍ରଯୁଗର ପ୍ରତୀକ ସେ—ଯୋଉ ଯୁଗରେ ମଣିଷ ମନଲୋକର କଳ୍ପନା ଭିତରେ ତୃପ୍ତି ପାଏ ନାହିଁ—ପୃଥିବୀ ବାହାରେ ନୂଆ ଦୁନିଆର ସନ୍ଧାନ ପାଇଁ ଅଥୟ ହୋଇ ଉଠେ···

ଜାଣୁ ବୋଉ ? ଚନ୍ଦ୍ରଲେଖଙ୍କୁ ମଣିଷ ଯିବ ଏଥର । ଅନନ୍ତର ଆଧିକ୍ୟରେ ଜଳ ଉଠେ ସୁଲେଖାର ଆଖି ଯୋଡାକ—ଅଜ ଯେଉଁ ଚନ୍ଦ୍ରଲୋକରେ ପ୍ରଣୟ ଅଉ ମୁଁ ମଧୁଚନ୍ଦ୍ରିକା ଯାପିବୁ…ଭାରି ମଜାହେବ, ନୁହେଁ ବୋଉ ?

ଅବାନ୍ତର କଳ୍ପନା…ଅସମ୍ଭବ ନୁହେଁ—

ମଧୁଚନ୍ଦ୍ରିକା…ମନେ ମନେ ଉଚ୍ଚାରଣ କରେ କସ୍ତୁରୀ-କେମିତି ସ୍ୱୀକାର କଲା ସୁଲେଖା ? ଜୀବନର ଅତି ନିଗୂଢ଼ ତଥ୍ୟ କେମିତି ପ୍ରକାଶ କଲା ସେ ନିଃଶଙ୍କୋଚରେ ଲାଜ ଲାଗିଲା ନି ତାକୁ ? ଛି…

ସବୁ ନୂଆ ଲାଗେ କସ୍ତୁରୀକୁ—ଯେମିତି ନୂଆ ଲାଗିଥିଲା ସେଦିନ ବାସର ରାତିରେ ଅଶୋକକୁ ପ୍ରଥମ ଥର ପାଇଁ ଦେଖି—ଜୀବନରେ ପ୍ରଥମଥର ଲାଗି ପୁରୁଷର ସାନିଧ୍ୟ…ଥରି ଉଠିଥିଲା କସ୍ତୁରୀର ଅସ୍ମା—ଚଉଦ ବରଷର କଅଁଳ ପ୍ରାଣ ଛଟପଟ କରି ଉଠିଥିଲା ଅନାଗତ ଅନୁଭୂତିର ଆଶଙ୍କାରେ…

ତଳେ ମଥା ଲଗେଇ ପ୍ରଣାମ କରୁଥିବା ସେ ଅଶୋକକୁ…ଶିଖେଇ ଦେଇଥିଲେ ଭାଉଜ—ସ୍ୱାମୀ ହଉଛନ୍ତି ଦେବତା ! ଗୁଡି ଉପରକୁ ଅଉଁକେଇ ଆଣିଥିଲା ଅଶୋକ —ଆଶ୍ୱାସନା ଦେଇଥିଲା—ଛି, ଡର କଅଣ କସ୍ତୁରୀ ? ସାରା ଜୀବନ ଯାହା ସାଥିରେ ଦିନ କାଟିବ ତାକୁ ସ୍ପର୍ଶି ସଙ୍କୋଚ କଅଣ ? କଥା କୁହ…

କିନ୍ତୁ ପାରିନ୍ଥିଲା ନି କଥା କହି କସ୍ତୁରୀ…କାନେ କାନେ ଶିଖେଇ ଦେଇଥିଲେ । ଭାଉଜ—ମଉନ ବ୍ରତ ନବାଲାଗି—କଥା କହିଲେ ନିର୍ଲଜ ବୋଲି ଭାବିବେଯେ ?

ନିର୍ଲଜ ହୋଇ ପାରିନି ସେଦିନ କସ୍ତୁରୀ—

ତାର ଝିଅ ସୁଲେଖା…ସେ ଅଜ ନିଃସଙ୍କୋଚରେ ଅଳି କରୁଚି— ପ୍ରଣବକୁ ମୁଁ ଚାହେଁ —ପ୍ରଣବକୁ ନ ପାଇଲେ ମୁଁ ପାଗଳ ହୋଇଯିବି ।

ଏସ୍ତୁ ବା ପାଗଳାମି…ସବୁ ବୁଝେ କସ୍ତୁରୀ—ତଥାପି ସେଇ ପାଗଳାମିକୁ ସେ ପ୍ରଶ୍ରୟ ଦେଇଚି ତାର ଏକମାତ୍ର ସନ୍ତାନ ବୋଲି—ତା ବତିଶି ବର୍ଷ ଜୀବନ ଭିତରେ ଯାହା ଥିଲା ଅସମ୍ଭବ, ତା'ର ପ୍ରାୟଶ୍ଚିତ୍ତ ସେ ଅଜ କରୁଚି ସୁଲେଖାର ପାଗଳାମି ଭିତରେ—

ବାଧା ଦେଇଚି ଅଶୋକ · ତମେ ଶାସନ କର କସ୍ତୁରୀ ! ଲଗାମଛଡ଼ା ଝିଅଟକୁ ନେଇ ଖେଳ ଖେଳିବା ହୁଏ ସିନା, ଜୀବନ ତ ଗଢ଼ି ହୁଏ ନା ! ନାରୀର ବିକାଶ ନାରୀତ୍ୱରେ—ଉଚ୍ଛୃଙ୍ଖଳତାରେ ନୁହେଁ…

ହସେ କସ୍ତୁରୀ...ଝିଅ କଅଣ ? ଯୁଗ ସାଥିରେ ତାଳ ପକେଇ ଚାଲିଚ ସେ—ଫେରି ଅସିବା ଲାଗି କି ଶାସନ ମୁଁ କରିବି ? ଅଶୋକର ଚଉଡ଼ା ଛାତି ଭିତରେ ମୁହଁ ଗୁଞ୍ଜି ସେ—

ଜାଣ ? ଭାରି ଇଚ୍ଛା ହୁଏ ମୋର ଅତୀତରେ ଫେରିଯିବାକୁ···
କୁଆଡ଼େ, ଆଶ୍ଚର୍ଯ୍ୟ ହୁଏ ଅଶୋକ···
ଷୋଳ ବରଷ ପଛକୁ···
ପାଗଳ ହେଲନା କଅଣ ?

ପଚରେ ସେ—ଏମିତି ଲଗାମଛଡ଼ା ଖିଆଲ ନେଇ ଖେଳିବାକୁ ଭାରି ଇଚ୍ଛା ହୁଏ ବେଳେ ବେଳେ—ଭାବେ, ତମକୁ ଯଦି ମୁଁ ଆଗରୁ ଜାଣିଥାନ୍ତି ? ତମକୁ ଯଦି ମୁଁ ଆଗରୁ ଭଲପାଇ ଥାଆନ୍ତି ?

ହସେ ଅଶୋକ·· ତା ହେଲେ ଆଜିର ଏ ଭଲ ପାଇବାରେ ନୂତନତ୍ୱ ନ ଥାଆନ୍ତା—ସେଇ ପୁରୁଣା ପ୍ରହସନର ପୁନରାବୃତ୍ତି ଦେଖି କଅଣ ଆନନ୍ଦ ପାଇଥାନ୍ତ ତମେ ?

ହୁଏତନା—ତଥାପି ବୁଝେ ନା କସ୍ତୁରୀ· ·ଆଖି ଆଗରେ ତାର ନାଚିଯାଏ ସୁଲେଖା ଆଉ ପ୍ରଣବ—ଗୋଟିଏ ପ୍ରାଣ—ଦୁଇଟି ଦେହ । ବାସର ରାତିର ପହିଲି ମିଳନ ବେଳାରେ କାନ୍ଦୁ ଥିବ ଉଠିବ ନା ସୁଲେଖା । ଅପରିଚିତର ପାଳିଧରେ ଶିହରି ଉଠିବନି···ଯୁଗ ଯୁଗର ବନ୍ଧନ ବାନ୍ଧି ରଖିବ ଯାହାକୁ—ଜୀବନର ଶୁଭଲଗ୍ନରେ ଦୁହେଁ ଶପଥ ନେଇଥିବେ ଅଗ୍ରସରିଯିବା ଲାଗି ସମୟ ସାଥିରେ ପାଦ ପକେଇ···ଆଗରେ ନୂଆ ଦୁନିଆ···ବସନ୍ତ—ବର୍ଷା···କହିବାର ତାଙ୍କର ମହାନ୍—

କସ୍ତୁରୀର ଖୋଳ ଭିତରୁ ବାହାରି ଅସିବ ସୁଲେଖା ··ପୁରାତନର ସମାଧି ହେଉଛି—ନୂଆ ଦୁନିଆ ହାତଠାରି ଡାକୁଚି—ସେ ଯିବ ।

କଳ୍ପି ଉଠେ କସ୍ତୁରୀ—ସେ ଯେମିତ ସୁଲେଖା ନୁହେଁ— ତା'ନିଜ ଜୀବନର ଗୋଟିଏ ଅଧ୍ୟାୟ ! ସୁଲେଖା ଭିତରେ ଯେମିତ ଖେଳି ବୁଲୁଚି କସ୍ତୁରୀର ହେଜିଲା ଅଧ୍ୟା···

ସେ ଖୁସି ହୋଇଛି—ଅନ୍ତର ଖୁସି ହବ ଯୋଡ଼ିଧନ ସୁଲେଖା ମଥାରେ ହାତରଖି ସେ ଆଶୀର୍ବାଦ କରିବ···ଶତପୁତ୍ରବତୀ ହୁଅ ! ଲଜ୍ଜା ହବ ସୁଲେଖା —ଅପ୍ରସ୍ତୁତ ହବ ପ୍ରଣବ···

ଯେମିତି ଅପ୍ରସ୍ତୁତ ହୋଇଥିଲା ସେଦିନ ସେ ନିଜେ—ବରଷକର ସୁଲେଖାକୁ କୋଳ ଭିତରେ ଜାକିଧରି ଯୋଉଦିନ ପ୍ରଶ୍ନ କରିଥିଲା ଅଶୋକ—ସୁ ! ପରେ କଅଣ ଗୁହିଁ କରୁଚୁ ? ପୁଅ ନା ଝିଅ ?

ଉତ୍ତର କିନ୍ତୁ ଦେଇ ପାରି ନ ଥିଲା ସେ—ମେଞ୍ଚାଏ ଅବିର ଯେମିତି କିଏ ବାଣ୍ଟିଦେଇଥିଲା ତା' ମୁହଁରେ···

ପୁରୁଷତ୍ୱ କିନ୍ତୁ ହାରମାନିଲା ଅଶୋକର—ମାତୃତ୍ୱ ବି ଆଜି ଫେରିଲା ନି ନୂଆରୂପ ନେଇ କସ୍ତୁରୀର···ସୁଲେଖା ପରେ ଖାଲି ରହିଲା କୋଳ···

ସେଇ ମାତୃତ୍ୱ ପୁଣି ଫେରିଆସିବ ସୁଲେଖା ଭିତରେ···ଅନାଗତ ମାତୃତ୍ୱ କଳ୍ପନାରେ ଉଲ୍ଲସି ଉଠେ କସ୍ତୁରୀ···ସେ ମାତୃତ୍ୱର ଯେଚିତ୍ତ ଅନ୍ତ ନାହିଁ—ଯୁଗପରେ ଯୁଗ ଗଡ଼ିଚାଲିବ ପ୍ରଗତି ପଥରେ···ମରିବ ନି କିନ୍ତୁ କସ୍ତୁରୀର ଅତ୍ମା··· ଅନାଗତ ଯୁଗଜନ୍ମା ବଂଶଧର ଭିତରେ ସେ ବଞ୍ଚି ରହିବ —ବଞ୍ଚି ରହିବ ସାର୍ଥକତାର ସ୍ୱପ୍ନ ନେଇ···

ସେତ ବି କଅଣ ସମ୍ଭବ ?





# ତୁମରି କଂକାଳ




ଶ୍ରୀମତୀ ବନଜ ଦେବୀ

ଗ୍ରା: ହିଞ୍ଜିଳାସ,
ପୋ: ବାଜପୁର
ଜି: ପୁରୀ


ସ୍ୱର୍ଗ ନ ହିଁ ମାଗେ ପ୍ରଭୁ ! ମାଗେ ନାହିଁ ଧନ
ହୀରା ନୀଳା ବିଭୂଷିତ ଅଳକା ଭୁବନ
କୈଳାସର ଆଭିଜାତ୍ୟ ! ନାହିଁ ପ୍ରଭୁ ମାଗେ
ଧ୍ୱଂସ କର ଯଦି ତାହା କେବେ ପ୍ରାଣେ ଜାଗେ ।
ସୁଖୀ ନାହିଁ ଗୃହେଁ ପ୍ରଭୁ ! ଦୁଃଖୀ ମତେ କର,
ଯା' ଜୀବନେ ନିତ୍ୟ ଲାଗେ ତୁମ କଳ ଗୋଳ
ଦାରିଦ୍ର୍ୟର କଶାଘାତେ ଅଶ୍ରୁ ହାହାକାରେ
ତୁମେ ଆଜ ବନ୍ଦୀ ରହ ଭିତରେ ବାହାରେ !
ହସ ନାହିଁ ମାଗେ ପ୍ରଭୁ ! ଲୁହ ମତେ ଦିଅ
ଯେ ଲୁହରେ ନିତ୍ୟ ଲୁଚେ ତମ ଆଖି ଲୁହ,
ସେ ଲୁହକୁ ସୁଖେ କରି ଜୀବନ ସମ୍ବଳ
ଏ ଜୀବନ ଦୀପ ଯାଉ ଧୀରେ ଜଳି ଜଳି ।
ବଡ଼ ହିଁ ଲୋଭିଲି ପ୍ରଭୁ ! ଖାଦ୍ୟ ନାହିଁ ଗୃହେ,
ଖାଦ୍ୟ ବିନା ବଞ୍ଚେ ଦେହ ! ମନ କିସ ବହେ ?
ଏ ଜୀବନ ହେଉ ପଛେ ଯା' କିଛି ଅଚଳ
ପ୍ରାଣେ କିନ୍ତୁ ଲାଗିଥାଉ ତୁମରି କଙ୍କାଳ ।

# ଅଳସ କନ୍ୟା

ଉଷାରାଣୀ ଦାସ ( ନୂଆ ରାଜଧାନୀ )

କେତେ କେତେ ଦିନ ଆଉ ଅଳସେ କାଟିବ କୁହ ଗୋ ଅଳସ ଘୋରି
ଶୂନ୍ୟ ଦେଉଳେ ପାଷାଣ ପରଶେ ବ୍ୟର୍ଥ ସପନ ଢୋଳି ।
ଯେଉଁ କଳାକାର ଗଢ଼ିଲା ତୁମକୁ କଳାର ପୂଜାର ପାଇଁ
ମରମ ତଳର ବେଦନା ଯେତେକ ସେ କିଅଁ ବୁଝିଲା ନାହିଁ ?
ତମ ରୂପ ଛଳେ ବିକଶାଇ ଗଲା ଆପଣା କଳାର ମୂଳ
କୋଟିକିମ କରି ଫୁଟାଇ ଦେଇଛି ପାଷାଣ ତନୁରେ ଫୁଲ ।
ମରମର ଅଭିଳାଷ –
ପୂରଣ କରିବ କିଏ ସେ ଶିଳ୍ପୀ, କାହୁଁ ଆଉ ଅବକାଶ ।
ରକ୍ତ ଅଧର ଫିକା ପଡ଼ିଲାଣି କାଳର କୁଆର ତଳେ
ଶୋଡ଼ଶୀ ତନୁର ସୁଷମା ମୂଲ୍ୟ ପଚାରୁଛି କିଏ ଥରେ ?
ଅବହେଳା ସହୁ ବସିଛ ତମେ କେତେ ଯୁଗ ଯୁଗ ଧରି
ରଜାରାଣୀ ପୀଠ ସରସ କରିଛ ତୁମେଇ ତ ବାସ ଭରି ।
କଳାକାର ମରିନାହିଁ—
ତମରି ଭିତରେ ଅମର ପାଇଛି କେତେ ଯୁଗ ଯୁଗ ପାଇଁ ।
ମନ୍ଦିର ଦେହେ ଖୋଲି ଦେଲା ଯିଏ 'ଅଳସ କନିଆ' ରୂପ
ଶକତି ନ ଥିଲା ଖଂଜି ଦେବାକୁ ସଂଜ ସକାଳେ ଧୂପ ?
ଅପୂଜା ହୋଇ ସେ ଅନାଦରରେ ଅଛି ବସିଛି କାହାପାଇଁ —
ସେ ଯୁଗ କେଶରୀ – ସେ ରୂପ ରଇଜ ଆଉ କି ଫେରିବ ନାହିଁ ?
ଦେଉଳ ପଡ଼ିଛି ଖାଲି—
ମୁଜା ଫୁଲ ହାତେ କିଏ ସେ ଲଳନା ଫେରଇ ଚରଣ ଚାଲି ।
ନୂପୁର ଶବଦେ ଗହନ ନିଦରୁ ଉଠିଲା ଅଳସ ଗୋରି
ଅଦୂରେ ଦେଖିଲା ଚାଲି ଯାଉଛି କେ-କେଶରୀ କାମିନୀ ପରି ।
ଏତେଦିନେ ତାର ତନ୍ଦ୍ରା ତୁଟିଛି—ଅଳସର ଅବସାନ
ଅତୀତ ପାଶୋରି ଶୁଣିବ ସେ ଆଜି ଭବିଷ୍ୟୁଗ—ଆହ୍ୱାନ ।
ଜୀବନ ଝଡ଼ରେ କଳା-କଳାକାର— ସ୍ରଷ୍ଟାର ଆପନ ଯହିଁ
ସବୁରି ଭିତରେ " ଲଜ୍ଜା କନ୍ୟା" ଅଧରେ ଫୁଟିଛି କଇଁ ।



( ଭୁବନେଶ୍ୱରସ୍ଥ ରାଜାରାଣୀ ମନ୍ଦିରର ଏକ ନାରୀ ମୂର୍ତ୍ତି )



# ସଂ ଗ ମ

ଶ୍ରୀମତୀ ବ୍ରହ୍ମାଣୀ ମହାନ୍ତି



ଏଇ ଏଇ ପୁଲକିଗଲା ସକାଳର ଆଲୁଅ,
ଗାଇ ଗାଇ ଛପିଗଲା ମଳୟ ତା' କାହାଣୀ,
ତରତରେ ଭସିଯାଏ ଯାହା ଆଖି ପଲକେ,
ରହି କି ପାରିଲ ତାରେ ମମତାର ମହଲେ ?

ଅଧ ପହର ଧରଣୀରେ ନିଃଶ୍ୱାସ ଛାଡ଼ିଲେ,
ସଞ୍ଜରେ ଫଗୁଖେଳ ଆକାଶର ଉଆସେ,
ସନ୍ଧିର ଉତ୍ସବ ତମସାର ଗହନେ,
ତାରକାର ମେଳେ କେବେ ଜ୍ୟୋତ୍ସ୍ନାର କୁଆରେ

ଆଜି ଅଉ କାଲି ନାହିଁ ଆଗରୁ ତା' ଥିଲା କି ?
ତାଳ ଦେଇ ମନର ତ ପକାଏ ପାହୁଣ୍ଡ,
ବର୍ଣ୍ଣ ବଦଳି ଯାଏ ନୂଆ ନୂଆ ରୂପରେ
ପୁରାଣର ପଦ୍‌ମାରେ ନୂତନର ଚହଟ ।





# —କଳ୍ପି—

କୁମାରୀ କ୍ଷୀରୋଦା କାନୁନ୍‌ଗୋ



ତାଙ୍କୁ ଚାହିଁବାକୁ ମତେ ଭାରି ଭଲ ଲାଗେ । ସତେ ମ, ତାଙ୍କ ମୁହଁରୁ ଯେମିତି ସ୍ନେହ ଝରୁଛି । ବାପ ମା ତାଙ୍କୁ ଆଦରରେ ନାଁ ଦେଲେ ସ୍ନେହ । ତାଙ୍କ କଥାବାର୍ତ୍ତା ବି ସ୍ନେହ ବୋଳା । ଚେହେରାରେ ଏମିତି ଗୋଟିଏ ଆନୁଷଙ୍ଗିକ ସ୍ନିଗ୍ଧତା ଅଛି ଯେ ନ ଚାହିଁଲା ଲୋକ ଥରେ ଚାହିଁବ । କିନ୍ତୁ ସେ ରୂପସୀ ନୁହନ୍ତି । ଈଷତ୍ ଶ୍ୟାମଳୀ । ଅଳସ ଆଖି ଟିକିଏ ଟିକିଏ କସରା । ମୁଣ୍ଡରେ ଗୋଛାଏ ବାଳ । ବୋଉ ତାଙ୍କୁ ଝାଣିଝେଣି ଏମିତି ବାନ୍ଧିଦେବ ଯେ ତାଙ୍କ ଗୋଲ ମୁହଁକୁ ବେଶ୍ ମାନେ । ଆମ ଘରକୁ ତାଙ୍କର ଆସିବା ବରଷ ପୂରିଗଲାଣି । ବଡ଼ ନୂଆବୋଉଙ୍କ ଆସିଲା ହେଲାଣି ଚାରିବର୍ଷ । ବଡ଼-ନୂଆବୋଉଙ୍କର ସହର ଚହଣି । ଘରମୁହଁ ସେ ଦେଖି ନାହାନ୍ତି । ଆମେ ସବୁ ତାଙ୍କର ସଂବତ । ମୋ ବୋଉ ତାଙ୍କର ସାବତ ଶାଶୁ ନାଁ । ଖାଲି ବଡ଼ଭାଇ ତାଙ୍କର ନିଜର । ସେଥିପାଇଁ ଭାଇ ଯୁଆଡ଼େ ଭାଉଜ ସିଆଡ଼େ ।

ସାନ ନୂଆବୋଉ ବିଚରା ମ ଟି ଛାମୁଡ଼ି ଗାଁରେ ପଢ଼ୁଛନ୍ତି । ସାନ-ଭାଇ ମୋର ଭାରି ଜିଦିଆ । ସାନ ନୂଆବୋଉଙ୍କୁ ସଙ୍ଗରେ ନେଲା ନାହିଁ । କହିଲା, "ବୋଉ ହଇରାଣ ହବ, ତମେ ଥାଅ ।" ଦେଖିଶୁଣି ଭାଇ ତାଙ୍କୁ ଗାଁ ସ୍କୁଲରେ ବାହା ହୋଇଥିଲା । ଏଇନା ତୃଟିଧର ଅମର୍ଣିଆ ବଳଦକୁ ମଅଣ କଲାପରି ତାଙ୍କୁ ମଣି କରୁଛି । ସାନ ନୂଆବୋଉ ବି କଲେଜ ପାଠ ପଢ଼ୁଛନ୍ତି ପାଣ୍ଠିଏ ବି କରନ୍ତି । କେତେ ରୁକଣି ତାଙ୍କୁ କରୁ ହଉଥିଲା । ଭାଇ କହିଲା,

'ନାଁ' । ସେ ଆଉ କଅଣ କରନ୍ତେ । ଏଇନା ବୋଉ ପାଖରେ ଶାକର ଘରଣୀ । ଗାଁ ଜୀବନ କୁଆଡ଼େ ତାଙ୍କୁ ଭାରି ଶାନ୍ତ ଲାଗୁଚି । ମତେ ସେ କେତେଥର କହନ୍ତି । ଗାଁ ବୋହୂଙ୍କ ପରି ତାଙ୍କ ଗୃହଚଳଣି କାମ ଦାମ ଏମିତି ଯେ କେହି ପଦେ ଖୁଣି ଦବେ ନାହିଁ । ପାଠୋଇ ସହରୀ ହୋଇ ବି ଲୋ ଏ ଯାଏ କେହି ଦାଉ ନାହାନ୍ତି ।



ସେତେବେଳେ ହୋଇଥାଏ ଶେଫାଳି ଝରା ଶୀତଳ ପାହାନ୍ତା । କୁଆଁ ତାଳ୍ପ ପିକା ହୋଇ ଯାଉଥାଏ । ନିଦ ଘାରିଥାଏ ମତେ । ନୂଆ ବୋଉଙ୍କ ଶୀତଳ ହାତ ସ୍ପର୍ଶରେ ମୋ ନିଦ ଭାଙ୍ଗିଯାଏ । "ଆସ ମ ଆସ । ଶୀଘ୍ର ଗାଧୋଇ ଆସିବା । ଆଜିପରା ବଡ଼ଭାଇ ହେବକା ଆସିବେ ।" ସାନ ନୂଆବୋଉ ମତେ ଏତେ ଡାକୁଥିଲେ । ସକାଳୁ ଶେଯ ଛାଡି ଉଠିବାକୁ ମତେ ଇଚ୍ଛା ହେଉ ନ ଥାଏ । "ସକାଳ ହେଇନି ନୂଆବୋଉ । ଆଉ ଟିକିଏ ଯାଉ ।" ସେ ଶୁଣିଲେ ନି । ମତେ ଟାଣି ଆଣିଲେ । ବାସି କାମ ସରିଚି । ବୋଉ ବସି ଘସର ଘସର କରି ବରି ଗୁଡ଼ାଳ ବାଟୁଚି । ବଡଭାଇ ପିଠାପଣାକୁ ଭଲ ପାଆନ୍ତି । ବଡ଼ପୁଅ ଆସୁଚି ବୋଉର ଶରଧା ଉଛୁଳି ପଡୁଚି । ସମସ୍ତେ ସିନା କହନ୍ତି 'ସାବତ' 'ସାବତ' । କିନ୍ତୁ ବୋଉ ସେ କଥା କହେ ନାହିଁ । ପାତର ଅନ୍ତର କରେ ନାହିଁ । ଭାଇବି ବୋଉକୁ ଭଲ ପାଆନ୍ତି । କିନ୍ତୁ ବଡ଼ ଭାଉଜ ଆସିଲା ପରେ କେଜାଣି କେମିତି ଅନେକ ବଦଳି ଗଲେଣି । ଏଇ କଥାକୁ କଣ ବୋଉ ଧରୁଚି ? ପୁଅ ଜଙ୍ଘରେ ହଗିଲେ ମା କଣ ଜଙ୍ଘ କାଟି ପକେଇବ ?

ଫିକା ପାହାନ୍ତରେ ପୋଖରୀରେ କଇଁ ହସୁଚି । ଧଳା କଇଁ, ନୀଳ କଇଁ, ନାଲି କଇଁ କେଜାଣି କେତେ ଫୁଟିଚି । ପାଣିକୁ ଦାଉଡ଼ିଗ କରି ମୁଁ ଫୁଲ ତୋଳିଲି । ବଡ଼ ଭାଇଙ୍କ ପୁଅ ନିରୁ ଖେଳିବ । ନାଲି କଇଁ କୁ ଦେଖିଲେ ସେ ସେ ଖୁସିହବ । କୋଇଲି କୁମ୍ଭାଟୁଆ ଚହଳ ପକେଇଲେଣି । ଏଥର ରାତି ପାହିଲା । ହୁଁ ହୁଁ ହୁଁଟିଆ କଟି ଅସୁଚି । ବଡ଼ଭାଇ ରେଲଗାଡ଼ିରୁ ଓହ୍ଲେଇ ସାରିବେଣି । ପଣ୍ଡାଘର ଗୋରୁଗାଡ଼ିତ ଯାଇଚି । ମନ କଲେ ଘରମୁହାଁ ହେବେଣି ।

କଡ଼ଉରେ ଅଣ ଗୋଲି ଦେଇ ବୋଉ ଉଚ୍ଚର ଘରେ ଥୋଇଚି । ସଜନା ଫୁଲ ଦାଳ ଗୋଟେଇ ନେଇ ବରଡ଼ା ଝୋଟେଇରେ ଚଢ଼ିଚି । ପଗୁର କୁଆଁ ସାରୁ ବଡ଼ ଗୃଡଶା, ଅମ୍ବୁଲ ଫଡ଼ାଏ ନେଇ ରାଇତା କରିଦେଲେ ବଡ଼ ଭାଇ ପରା ଖୁସି ହୋଇ ଖାଇବେ । ବଡ଼ ଭାଇତ ବୋଉ ହାତରୁ ଏମିତି ତରକାରୀ ଖାଇଛନ୍ତି । ତାଙ୍କୁ ଅମୁଖ ଲାଗିବ ନାହିଁ, ହେଲେ ବଡ଼ ଭାଉଜଙ୍କୁ କଣ ଏସବୁ ରୁଚିବ ? ତାଙ୍କ ପାଇଁ ସେ ଫୁଲ୍‌କାରୁଟି, ଅଣ୍ଡା, ଗୁ ମୁନ୍ଦାଏ ଲେଡ଼ା । ସେ ଉଡ଼ଲୋକ ଝିଅନା, କେତେ ପ୍ରକାର ଅଦବ କାଇଦା ଜାଣନ୍ତି । ବଡ଼ଭାଇଙ୍କି ଆମର ଶିଖେଇ ଦେଲେଣି ଯେ ରାତିରେ ଲୁଙ୍ଗି ବଦଳରେ ଢିଲା ପାଇଜାମା, କୁରୁତା ପିନ୍ଧା, ଖାଇଲାବେଳେ ଆଉ ପ୍ରକାରେ ପୋଷାକ, ଖେଳ ଦେଖିବାକୁ ଆଉ ପ୍ରକାରେ, କ୍ଲବକୁ ଗଲେ ଆଉ ପ୍ରକାରେ ଜାତକ ଜାତ, ଭଲି କି ଭଲି ପୋଷାକ, ଯୋତା, ଟୋପି । ମତେ ଏଗୁଡ଼ା ଭାରି ଅଡ଼ୁଆ ଲାଗେ । ଭାଇର ଗୋଟାଏ ବେଶକୁ ନୂଆବୋଉଙ୍କର ବି ଗୋଟାଏ ଗୋଟାଏ ବେଶ । ବଡ଼ ନୂଆବୋଉଙ୍କର ସ୍କୁଲର ଶେଷ କ୍ଲାସପାଏ ଯୋଗ୍ୟତା ବି ନାହିଁ । କିନ୍ତୁ ସେ ଇଂରାଜୀ କହି ପାରନ୍ତି । ମୁଁ ଯେତେଦିନ ତାଙ୍କ ପାଖରେ ଥିଲି ବାରଣ୍ଡାରେ ଦେଖୁଚି ତାଙ୍କର କେତେ ମରଦସାଙ୍ଗ, କେତେ ମାଇକିନିଆ ସାଙ୍ଗ ଆସନ୍ତି । ସମସ୍ତଙ୍କୁ ନୂଆବୋଉ କହନ୍ତି "ହ୍ୟାଲୋ, ହ୍ୟାଲୋ" ଭାଇ ସାଙ୍ଗରେତ ଇଂରାଜୀ କଥାରେ ବାହୁଲି ବାଜିବ ନାହିଁ । ସେ କୁଆଡ଼େ ଇଂରାଜୀ ସ୍କୁଲରେ ପଢ଼ିଛନ୍ତି । ଆମମାନଙ୍କ ସାଙ୍ଗରେ କଥା କହିଲେ ବି ସେ ମଝିରେ ଇଂରାଜୀ କହି ପକାନ୍ତି । ମୁଁ ତ ନିର୍ବୋଧଙ୍କ ପରି ଶୁଣେଁ, ବୋଉ ତ ବାବା ହେଇ ଅନାଏ । ଦାଦାଟା ଭାଇ କେଜାଣି କେତେ ପାଠ ପଢ଼ିଛନ୍ତି । ବୋଉ ପାଖରେ କେହି ଇଂରାଜୀ କହି ନାହାନ୍ତି । ସାନ ନୂଆବୋଉ ବି ଦିନେହେଲେ ସେ ବିଦେଶୀ ଭାଷା କହନ୍ତି ନାହିଁ । ଏମିତି କଥା ଓଡ଼ିଆ କହିବେ ଯେ ମୁଁ ତ ତାଜୁବ ହୋଇଯାଏ ।

ସାନ ନୂଆବୋଉ ଚୁଲିରେ ନୁଣ୍ଡା ଦେଲେ । ଆଗରୁ ଆଗରୁ ପିଠାକରି ରଖିଥିଲେ ସମସ୍ତେ ଆସି କଲଖିଆ କରିବେ । ବୋଉ ଠେକାଟା ଧରି ଗେଣ୍ଡେଇ ଗଉଡୁଣୀ ଘରକୁ ଦୁଧ ପାଇଁ ଗଲେଣି । ଦାନ୍ତ ନ ଘଷୁଣୁ ବଡ଼ ନୂଆବୋଉ ଚାହା ମାଗିବେ । ଏସବୁ ତାଙ୍କର ନିତିଗତି । ମୁଁ ଖାଲି ନଇର ପଦର ହଉଥାଏ । ଲିପାମାଟି ଉପରେ ମୋ ପାଦଚିହ୍ନ ପଡ଼ୁଥାଏ । ଘରଦ୍ୱାର ଆଜି ସଫା ସୁତୁରା, ଲିପାପୋଛା ହୋଇ ହସୁଛି । ଭରି ଆନନ୍ଦରେ ମୋ ଗୋଡ଼ ଏଠି ସେଠି ପଡୁଛି । ବଡ଼ଭାଇ ଆସିବେ, ବଡ଼ ନୂଆବୋଉ ଆସିବେ । ପିଲାମାନେ ଆସିବେ । ଗହଳ ଚହଲରେ ଘର ପୁରିବ । ଦାଣ୍ଡ ହସିବ । ନାତୁଣୀଙ୍କ ସ୍ନେହ ବୋଉ ଛୁଇଁହବ । ସଦାବେଳେ ତ ବିଦେଶ ଭୂଇଁରେ ପଶିଲେ ।

ଗେଣ୍ଡେଇ ଘରୁ ବୋଉ ସିମ ପଟା, କୋଳିଳା ସାଗ ଦୁଇଟି ଅଣ୍ଟିରେ ଆଣିଲା । ଚୂଲିମୁଣ୍ଡରେ ବସି ମୁଁ ସାଗ ବାଛୁଥାଏ । ସାନ ନୂଆବୋଉଙ୍କ ସାଥିରେ ଗପ କରୁଥାଏ । ଆଉ କେତେବେଳେ ଅସିବେ ମ । ପିଢ଼ାରେ ତ ପିଢ଼ାଏ ଖରା ହେଲାଣି । ପିଠା ହୋଇ ଥୁଆ ହେଲାଣି ।"

ବଳଦ ବେକ ଘଣ୍ଟି ଝମର ଝମର ଶୁଭିଲା । ମୁଁ ଦାଣ୍ଡକୁ ଦଉଡ଼ି ଗଲି । ବଡ଼ଭାଇ ଠିଆ ହୋଇଛନ୍ତି । ପଦଆ ଦାଦ ବଳଦ ଫିଟେଇ ମହଣ୍ଡାରୁ ଗୁଡ଼ ମହଣିଆ ଟ୍ରଙ୍କଟାଏ ଦଉଡ଼ି ପିଟେଇ କାଢ଼ୁଛି । କେତେ ମଣିଷ ଅନେଇଚନ୍ତି । ବଡ଼ ଭାଇଙ୍କୁ ମାଇନ ହେଲି । ନଇପଡ଼ ଗାଡ଼ି ଭିତରକୁ ଅନେଇ ଦେଲି । ନୂଆ ବୋଉ ହସିଲେ । ମୁଁ ବି ହସିଲି । ବଡ଼ ନୂଆବୋଉ ଆମର ଏ ମାଟି-କୁଡ଼ିଆ ଦେଖି ନ ଥିଲେ । ବିଦେଶ ଭୂଇଁରେ ତାଙ୍କର ବାହାଘର । ସେଇଠି ରହଣି । ବୋଉ ଯାଇ ବର୍ଷେ ଖଣ୍ଡେ ଚଳେଇ ନେଇ ଅସିଥିଲା । ଏଣୁ ଆମର ଏ ମାଟିଘର ଝଣ୍ଟେକରେ ବତା ବାଉଁଶରେ ଭରି, କବାଟରେ ଉଇ ଚରି ଯାଉଥିଲେ । ଘରେ ମୂଷା ମାଟିର କୁଡ଼ଟାଏ । ଯେଉଁଠି ଗୋଡ ପକାଇବ ତଳକୁ ଗଳିଯିବ । ଚେମଣି ନଣ୍ଡି, ଅସରପା ନଣ୍ଡି, ଚୁଚୁନ୍ଦ୍ରା ନଣ୍ଡି ଘରଯାକ ମେଞ୍ଚାକୁ ମେଞ୍ଚା । ବୋଉପରି ସେଇଦନ୍ତୁ କାନ ମୋଡ଼ ହେଇଚ ଆଉ ଘରଗଳ୍ଡ଼ ଯିବ ?

ବଡ଼ ନୁଆବୋଉ ଗାଡ଼ିରୁ ଓହ୍ଲେଇ ଆସିଲେ । ବୋଉକୁ ମାଇନ ହେଲେ । ମଲ ମଲ ଏଣେ ଗୋଡ଼େରେ ଚମଡ଼ା ଯୋତା । ସମସ୍ତେ କାବା ହେଲେଣି । ଆମର କରଣ ଘର । ଅମ ଝିଅ ବୋହୂଙ୍କୁ ପୁଣି ଦାଣ୍ଡଲୋକ ବାଛୁବେ ? ସବୁ ଦନକୁ କଥାଟା ରହିଯିବ ନା ଆଉ କଣ ? ମୁଁ କହିଲି

"ନୂଆ ବୋଉ ଯୋତାଟା ଓହ୍ଲେଇ ଦିଅ।" ସେ ମୋ ମୁହଁକୁ କଟ କଟ କରି ଅନେଇଲେ। ମୁହଁଟା କୁଞ୍ଚେଇ ଦେଇଥିଲେ ସିନା ମୋ କଥାରେ କାନ ଦେଲେ ନାହିଁ।

ଉପର ମେଲାରେ ଭାଗଚ ଗୋଟେଇଁ। ତଳ ମେଲାରେ ଘର ଭିତରକୁ ବାଟ। ବଡ ଭାଉ ଯୋତା କାଢ଼ିଲେ। ବଡ଼ ନୂଆବୋଉ ଯୋତା ମାଡ଼ି ଘରକୁ ପଶିଲାକ୍ଷଣି ବୋଉ କହିଲା, "ହଁ, ହଁ, ବୋଉ ତେମେ ଯୋତାପାଦ ଠାକୁର ଘରକୁ ପଶୁଚ ?" ବଡ଼ ନୂଆବୋଉ ଚମକି ପଡ଼ିଲେ। "ତାହେଲେ ଘରେ ଯୋତାମାଡ଼ ହବ ନାହିଁ ?" ବୋଉ କହିଲା "ଚମଡ଼ା ଯୋତା ଘରେ ପଶିବ ନାହିଁ।" ବଡ଼ ନୂଆବୋଉ ଅଶ୍ଚର୍ଯ୍ୟ ହେଲାପରି ପଚାରିଲେ "ପିଲାଛୁଆ କେହି ମାଡ଼ିବେ ନାହିଁ ?" ବୋଉ ମୁଣ୍ଡ ହଲେଇ ମନା କଲା। "ଠାକୁର ମାରି ହେବେ। ଲକ୍ଷ୍ମୀ ଛାଡ଼ିଯିବେ। ଘର ଖୋଲା ହେଇଯିବ।"

"ମତେ ଜର ହେଇଥିଲା। ପିଲାଗୁଡ଼ାଙ୍କୁ କାଶ ଶର୍ଦ୍ଦି। ଯାଆଙ୍କ କଥା ତ ଛାଡ଼।" ତଳେ ଓଦାମାଟିରେ ଖାଲି ପାଦରେ ଚାଲିଲେ ସମସ୍ତେ ପୁଣି ବେମାର ପଡ଼ିବେ। ବେଶ୍, ଘର ଦେଖା ତ ସରିଗଲା। ବୋଉଙ୍କୁ ତ ଦେଖିଲି। ଏଥର ଫେରିଚାଲ। ଭାଇ କିଛି କହୁ ନ ଥାନ୍ତି। ବୋଉ କହିଲା "ଏ କି କଥା ବୋହୂ ?" ନୂଆବୋଉ ଜବାବ ଦେଲେ ନାହିଁ,ଗାଡ଼ିଆଳକୁ କହିଲେ "ଟ୍ରଙ୍କଟା ଲଦ ଦିଅ।" ସମସ୍ତେ ତାଙ୍କୁ ଚାହିଁଛନ୍ତି। ବୋଉକୁ ଲାଜ ମାଡ଼ିଲାଣି। ବୋଉ କଣ କହିବ କଣ କରିବ ବୁଝି ପାରୁନାହିଁ। କହି ପକେଇଲା "ସାନ ବୋହୂ ପରି ତେଣେ ଜଳଖିଆ କରି ଅନେଇଚ। ସେତେ ବାଟରୁ ଆଇଚ। ପିଲାଗୁଡ଼ାଙ୍କୁ ଭୋକ ହବଣି। ଏମିତି କାଏ ଯାଏ ନା ତେମେ ଯିବ ?" "ନ ଯାଇ ଅଉ କଣ କରିବ। ପିଲାଗୁଡ଼ାକ ଏଠି ମାଟିରେ କୋଡଗି ହେବେ। ରୋଗ ଧରି ବସିବେ। ଶେଷକୁ ମୁଁ ଧାଣ୍ଡି ହେବ। ମୁଁ ଯାହା ଦେଖୁଚି ଏଠି ତ ଚଳି ହବ ନାହିଁ। ତମେ ମତେ ମନା କରନା ବୋଉ। ମୁଁ ଯାହା କହେ ସେଇଆ କରେଁ।

ବୋଉ ଭାଇଙ୍କ ମୁହଁକୁ ଅନେଇଲା। ତଳକୁ ମୁହଁ କରି ସେ ଠିଆ ହେଇଚନ୍ତି। ବୋଉ ମୁହଁକୁ ଚାହିଁବାକୁ ତାଙ୍କୁ ଲାଜ ଲାଗୁଚି। ବୋଉ କହିଲା "ଅସିଚ ଯଦି ତମ ଘରଦ୍ୱାର ଟିକିଏ ବୁଲିଚାଲି ଦେଖିଯାଅ। ଟିକିଏ ସ୍ନେହ ତମକୁ ଦେଖିବ ନାହିଁ ?" ନୂଆବୋଉ ଯୋତା କାଢ଼ି ବେଣି ପରି ଡ଼େଇଁ ଡ଼େଇଁ ଚାଲିଗଲେ। ବୋଉ ବଡ଼ଭାଇଙ୍କ ଅଣ୍ଟିସି ପକେଇଲା। "ମୋ ବାଇଆଟା ରେ।" ଦେହ ଅଶିଣ ମାସବେଳେ ଖରାପ ହୋଇଥିଲା ଯେ ବଡ଼ଭାଇଙ୍କ ପାଖକୁ ଚିଠି ଯାଇଥିଲା। ଭାଇ କହିଲେ ବୋଉକୁ ଦେଖି ଆସିବାକୁ। ଅଜ ପଞ୍ଜପର ଶୁକ୍ଳ ଦଶମୀ, ମଙ୍ଗଳବାର।

ଯୋଉ ଛ ଘର ! ତାଙ୍କୁ ପୁଣି ବଡ଼ ନୂଆବୋଉ ଆଖି ପୁରେଇ ଦେଖିବେ । ଗୁହାଆଡ଼େ ଟିକିଏ ଆଖି ବୁଲେଇ ଆଣିଲେ । ନୂଆଁଣିଆ ଗୁହଘର । ଝରକା ନାହିଁ । ଦିନବେଳେ ବି ଟିକିଏ ଅନ୍ଧାର । ବଡ଼ ନୂଆବୋଉ ତର ତର ହେଲେଣି । ସାନ ନୂଆବୋଉ ଜଳଖିଆ ବାଢ଼ିଦେଲେ, ଗୁହା କରିନେଲେ । ଭାଇ ଖାଇଲେ, ନୂଆବୋଉ ଖାଇଲେ । ପିଲାମାନଙ୍କୁ ବୋଉ ପିଠା ଟିକିଏ ଟିକିଏ ଚକଟି କରି ଖୁଆଇ ଦେଲା । ଦୁଧ ପିଆଇ ଦେଲା । ଭାଇ ନୂଆବୋଉ ଅଗଣାରେ ଆସି ଠିଆହେଲେ ।

ଅଗଣାରେ ସଜନା ଗଛ, ଗୋଲାପ ଗଛ, ଲଙ୍କାମରିଚ ଗଛ । ସଜନା ଗଛରୁ ସିଁଅବାଳୁଆ ସୂତା ନଇଁଛି । ଲଙ୍କା ଗଛରେ ସୂର୍ଯ୍ୟମୁଖୀ ଲଙ୍କା ଫୁଲ ଫୁଟି ହୋଇ ନଇଁପଡ଼ିଛି । ଗୋଟିଏ ଗୋଲାପ ଗଛରେ ଧଳା, ନାଲି ଗୋଲାପ ଫୁଟିଛି । ବଡ଼ ନୂଆବୋଉ ଫୁଲଗଛ ପାଖକୁ ଗଲେ । "ଏ କଣ ମା ! ଧଳା, ନାଲି ଗୋଲାପ କେମିତି ଗୋଟିଏ ଡାଳରେ ?" ମୁଁ କହିଲି "ତମେ ବୁଝି-ପାରୁନା ନୂଆବୋଉ ଏ ସବୁ କଲମିଗଛ । ଗୋଟିଏ ଗଛରୁ ଡାଳ ଆଣି ଆଉ ଗୋଟାଏ ଗଛରେ ଯୋଡ଼ଦିଆ ହୋଇଛି । ଲୋକେ ଦେଖିବାକୁ ଗଛଟା ସିନା ଗୋଟାଏ, କିନ୍ତୁ ନାଲି ଗଛର ନାଲି ଫୁଲ ଧଳାଗଛର ଧଳା ଫୁଲ । ଏ ଗଛଟା ସିନା ଆଉ ଗୋଟାଏ ଗଛର ଡାଳକୁ ନିଜ ଦେହରେ ବଢ଼ଉଛି, ନିଜର ବୋଲି କହୁଛି, ହେଲେ ଫୁଲ ଫୁଟିଲାବେଳକୁ କଣ ହେଲା ଦେଖିଲ ? ଦୁଇଟା ଅଲଗା ଅଲଗା ରଙ୍ଗର ଫୁଲ ଗୋଟାଏ ଗଛରେ କେମିତି ଫୁଟେ ଦେଖିଲ । ଏ ସବୁ କଲମି ?" ମୁଁ ମଫସଲି ନଣନ୍ଦଟା ବୋଲି ନୂଆବୋଉ ମୋ କଥାରେ ହସି-ଦେଲେ । ଫୁଲ ତୋଳି ହାତରେ ଧରିଲେ ।

ପୁଣି ଗଇଡ଼ାଘର ବଳଦ ବେକେ ଘଣ୍ଟି ଝୁମର ଝୁମର ହୋଇ ଆମ ଦାଣ୍ଡରୁ ଗୁଲିଗଲା । ଆଖି ବୁଲିଗଲା, ଚକ ବୁଲିଗଲା, ପାଦ ବୁଲିପଡ଼ିଲା । ଦୂରରୁ ଗାଡ଼ିଆ ଡାକ ଠାକେସି ଶୁଭିଲା "ହଟ୍, ହଟ୍, ହଟ୍ ।" ଚନ୍ଦ୍ର, ମୁନୁଙ୍କର କୁନି କୁନି ମୁହଁ ଲୁଚିଗଲା । ସଇବୋଉ କହିଲା "ଏ କୋଉକଥା ମା ।" ବୋଉ ଆଖିରୁ ଦୁଧାର ଲୁହ ବସୁମାତା ଉପରେ ପଡ଼ିଲା ।"

"ବୋଉ ତମେ କାନ୍ଦୁଚ ? ଭାଇଙ୍କର ଅମଙ୍ଗଳ ହେବନି ?" ସାନ ନୂଆବୋଉ ବୋଉ ହାତଧରି ଭିତରକୁ ନେଇଗଲେ । ବୋଉ କହିଲା "ନାଇଁ-ଲୋ ମା, ଅନ୍ତରରୁ ଜନମ ଦେଇନାଇଁ ବୋଲି ସେ କଣ ମୋର ନୁହନ୍ତି କି ? ଭଗବାନ ତାଙ୍କୁ ଭଲରେ ରଖନ୍ତୁ ।"



# ପ୍ରତିବନ୍ଧ

—କୁମାରୀ ଦେବୀକା ରାଣୀ

ତାହା ଉଚିତ ହେବନି ··

ତମେ ଭୁଲ୍ ବୁଝିଛ, ଯଥେଷ୍ଟ ଉଚିତ ହେବ ।

ସେ ପୁଣି ପ୍ରତିବାଦ ଗଳାରେ କହିଲେ, "ମୁଁ ତା କରାଇ ଦେବିନି ।

ମୁଁ କହିଲି ତମେ ଠିକ୍ କହୁଚ ସଂଯୁ; ତମେ କରାଇ ଦେବନି ସତ; କିଂନ୍ତୁ ନିଜେ କରିବ ।

ତା ପରେ ସଂଯୁ ଆଉ କିଛି ନକହି ନୀରବ ରହିଲେ ।

ସିପ୍ରା ସେଦିନବେଳକୁ କଲେଜ ଚାଲିଯାଇଥାଏ—ମୋର ଦେହ ବ୍ୟସ୍ତ ହେତୁ ଅଫିସ ଯିବା ବନ୍ଦ—ବାହାରେସାମାନ୍ୟ ଝିପି ଝିପି ବର୍ଷା—ଶୀତୁଆ ପବନ ବହିବାରୁ ଝରକା ଓ ଦୁଆର ପ୍ରାୟତ ବନ୍ଦ କରିଦେଇ ପରିଚାରକ ନବା ଅନ୍ୟ କୋଠରୀରେ ଶୋଇପଡ଼ିଥାଏ—ବାହାରୁ ପୋଷ୍ଟପିଅନର ଡାକ ଶୁଣା-ଗଲା ବାବୁ ଚିଠି···ଚିଠି··· । ମୁଁ ଆସନ ଛାଡ଼ିବା ପୂର୍ବରୁ ସଂଯୁ ନିଜେ ଯାଇ ଚିଠିତକ ନେଇ ଆସିଲେ । ସେଦିନ ତାଙ୍କ ନିଜର କିଛି ନଥିଲା—କେବଳ ମୋର ଖଣ୍ଡେ ପୋଷ୍ଟକାର୍ଡ—ଅଉଖଣ୍ଡେ ଗୋଲାପି ଲଫାପାରେ··ସିପ୍ରା ନାଁରେକୁ ···ବୋଧେ ତାର କେହି ବନ୍ଧୁ ଦେଇଥିବେ ।

ମୁଁ ମୋ ଚିଠି ପଢ଼ିବାରେ ବ୍ୟସ୍ତ—କିଂନ୍ତୁ ସଂଯୁ ସିପ୍ରାର ଚିଠିଟିକୁ ବାରମ୍ବାର ଏପଟ ସେପଟ କରି ଅଡ୍ରେସ ଓ ମୋହର ଇତ୍ୟାଦି ଦେଖୁଥା'ନ୍ତି—ମୁଁ କହିଲି "କଣ ତୁଅଙ୍କଭଳି କଅଣ ଏପଟ ସେପଟ ଦେଖି ଚାଲିଛ—ସେଥିରେ ଛବି ଅଙ୍କା ହେଇଛି ନା ଅଉକିଛି ?

ସେ ଟିକିଏ ମନେ ମନେ ବିରକ୍ତ ହେଲାପରି ଜଣାପଡ଼ିଲେ···ତା ପରେ ମୁଁ ପଚାରିଲି—"ସଂଯୁ ତମକୁ ବାଧା ଦେଲି ବୋଲି ତମେ ବୋଧେ ତମ ମୋ ମଧ୍ୟରେ ଗୋଟାଏ କିଛି ବ୍ୟବଧାନ ଥିବାପରି ମନେ କରୁଛ, ନୁହେଁ କି ?

ସଂଯୁ କହିଲେ—''ନାଇଁତ—କାହିଁ ସେପରି କିଛି ମନେ କରିନି ··

ତମେ ନିମ୍ନ୍ତ, ମନଭାବରୁ ସେଇମିତ ଜଣାଯାଉଛି ଯେ···ତମ ମନକଥା ଯଦି ମନରେ ରହିବ ତା ହେଲେ ମୁଁ ବୁଝିବି କିପରି ? କହିଦେଖି, ସିପ୍ରା ପ୍ରତି ଏତେ ବିରକ୍ତଭାବ କାହିଁକି ?

ସଂଯୁ କିଛି ନ କହି ଚାଲିଗଲେ···ଭିତର କୋଠାରୁ ଗୋଟିଏ ଖୋଲା ଚିଠି ଆଣି ମୋ ଆଗ ଟିପଏ ଉପରେ ରଖିଦେଇ ନୀରବ ରହିଲେ—ମୁଁ ଦେଖିଲି ଚିଠିର ଲଫାପା ଉପରେ ସିପ୍ରାର ନାଁ ଲେଖାଅଛି—ମୁଁ ବା ପଢ଼ନ୍ତି କାହିଁକି । କେବଳ ଏତିକି କହିଲି—"ଏତ ସିପ୍ରାର ଚିଠି—ତେବେ ମୋତେ କାହିଁକି···

ସଞ୍ଜୁ ବ୍ୟଙ୍ଗରେ କହିଲେ—"ତଥାପି ବୁଝି ପାରୁନ—କେମିତି ମଣିଷ ମ ତମେ—ଚିଠିଟା ପଢ଼ିଲେ ସିନା···

ମତେ ଭାରି ଖରାପ ଲାଗୁଥାଏ—କିନ୍ତୁ ସଞ୍ଜୁଙ୍କ ଅନୁରୋଧ ଏଡ଼ା ନ ପାରି ପଢ଼ିଲି···

ସ୍ନେହର ସିପ୍ରା···

ଚିଠି ପାଇଛୁ—ତମେ ମତେ କାହିଁକି ଯେ ଏତେ ଭଲପାଅ ବୁଝି-ପାରେନା—ମତେ ନେଇ ତମର ଭବିଷ୍ୟତ ସଂସାର ଗଢ଼ିବା ପାଇଁ ଯେଉଁ କଳ୍ପନା କରୁଛ ତାହା କ'ଣ ସମ୍ଭବ ହୋଇପାରେ ! ଚେଷ୍ଟା କରିବ ଭୁଲିଯିବାକୁ । ତମଲାଗି ସ୍ନେହ ଓ ଶୁଭେଚ୍ଛା ସହ··· ··· ମାନସ···

ପଢ଼ିସାରି ଚିଠିଟି ବନ୍ଦ କରୁ କରୁ କହିଲି ବେଶ୍ ହୋଇଚି—ସଞ୍ଜୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—ମାନେ ?

କହିଲି ମାନେମାନେ ମୁଁ ଜାଣେନା···ଏ ଗୁଡ଼ା ନେଇ ମୋ ଆଲମିରାରୁ ଲେଦର ହ୍ୟାଣ୍ଡବ୍ୟାଗ୍‌ଟା ଆଣ ସେ ବୁଝାଇଦେବ ଏହାର ମାନେ···

ମୁହଁ ଭାରି କରି ସଞ୍ଜୁ ବ୍ୟାଗ୍‌ଟା ମୋ ହାତକୁ ବଢ଼େଇ ଦେଇ ନିଜ ଆସନରେ ବସିଲେ । ମୁଁ ଗୁଡ଼ାଏ ଖୋଜାଖୋଜି କରି ଅନେକଦିନ ତଳର ଗୋଟିଏ ଚିଠି ବାହାର କରି ସଞ୍ଜୁଙ୍କ ହାତକୁ ଦେଲି···

ସଞ୍ଜୁ ନୀରବରେ ଚିଠିଟି ପଢ଼ିବାକୁ ଆରମ୍ଭ କଲେ—କହିଲି ବଡ଼ପାଟିରେ ପଢ଼—ରୁଦ୍ଧଗଳାରେ ସଞ୍ଜୁ କହିଲେ, ନାଇଁ ମୁଁ ପଢ଼ି ପାରିବି ନି·····

ପାରିବନି ! କାହିଁକି ? ପୂର୍ବ ବାହାରୁ ତମେଇତ ଲେଖିଥିଲ । ତମେ ଅଛ ମୁଁ ଅଛି—କେବଳ ପୁରୁଣା ହୋଇଯାଇଛୁ ବୟସ, ତଥାପି ଅତୀତର ସେଇ ଗୁପ୍ତ ଚିଠିର ମର୍ମ କ'ଣ ତମ ମାନସୀ ଝିଅଣାରେ ଶିହରଣର ଢେଉ ତୋଳେନା ବା ତମ ମନ ସିତାରରେ ଝଙ୍କାର ଭରେନା, ତେବେ ବର୍ତ୍ତମାନର ବିଶ୍ଳେଷଣରେ ଲଜ୍ଜସିକ୍ତ କାହିଁକି ?

ନାଁ ମୁଁ ପଢ଼ିପାରିବିନି···

ତାଙ୍କରି ଅସହାୟତାରେ ହସ ଲାଗିଲା, କହିଲି—ବୟସ ବାସନ୍ତୀର ପୂର୍ଣ୍ଣିମାରେ ତମ ପ୍ରାଣତଳେ ଜାଗିଥିଲା ଅପୂର୍ବ ଦୁର୍ବଳତା···ତମେ ନିଜକୁ ସମର୍ପି ଲେଖିଥିଲ ଚିଠି, ପ୍ରତଶ୍ରୁତି ଲାଗି—ଶତ ଶତ ମିନତି ଭରି ରହିଥିଲା ପ୍ରତି ଅକ୍ଷର ତଳେ—ତେବେ ବୟସ ଉପକଣ୍ଠେ ଥିବା ଏମ୍. ଏ. ଶ୍ରେଣୀ ଛାତ୍ରୀ ସିପ୍ରାପକ୍ଷେ ଏପରି ଚିଠିର ଆଦାନ ପ୍ରଦାନରେ ବିଶେଷ କିଛି ଆଶ୍ଚର୍ଯ୍ୟ ହେବାର କଣ ଅଛି କହିପାରିବ ?

ସଞ୍ଜୁ ନୀରବ ରହିଲେ ।

ବାହାରୁ ପବନର ତେଜ ସାଥେ ଭାସି ଆସିଲା କାର ହର୍ଣ୍ଣର ଧ୍ୱନି ·· କିଛି ସମୟ ଅନ୍ତରେ ସିପ୍ରା ସେଇ କୋଠରୀରେ ପ୍ରବେଶ କରି ସହଜ ଗଳାରେ ପ୍ରଶ୍ନ ଅଙ୍କିଲା—ଆଜି ଡାକରେ ମୋର କ'ଣ ଚିଠି ଆସିଛି ମା··· ?

ହାତରେ ଥିବା ମୁଦା ଶଠିଟି ସିପ୍ରା ହାତକୁ ସଂଯୁ ନୀରବରେ ବଢ଼େଇ ଦେଲେ···

ସିପ୍ରା ଶଠିଟି ନେଇ ବାହାରି ଗୃଲଗଲା—ମୁହଁରେ ତାର ଅଶେଷ ତୃପ୍ତିର ସ୍ୱାକ୍ଷର ··

ମୁଁ ମୂରୁକ ମୂରୁକ ହସୁଥିଲି—ଦେଖିଲି ସଂଯୁ ମୋ ମୁହଁକୁ ଗୃହିଁ ଛନ୍ତି । ତାଙ୍କ ଗଣ୍ଡର ଗୋଲାପ ଚଟିଗୃଟରେ ହସର ଜୁଆର ଏବଂ ଅଧର ପ୍ରାନ୍ତରେ ରକ୍ତିମ କୁସୁମ ବିକାଶ ।

କହିଲି ସୃଷ୍ଟିରେ ପ୍ରତି କର୍ମର କିଛି ନା କିଛି ପ୍ରତିକ୍ରିୟା ଅଛି —ସିପ୍ରାର ଭଲ ପାଇବା ମନବୃତ୍ତି ଜନ୍ମ ନେବାରେ ଆମ ଦୁହିଁଙ୍କର ପ୍ରଣୟ ଇତିବୃତ୍ତ ଦାୟୀ ନୁହେଁ କି ? ସଂତାନମାନଙ୍କ ଭବିଷ୍ୟତ ସୁନ୍ଦର କରି ଗଢ଼ିବାକୁ ହେଲେ ପିତାମାତା ନିଜ ନିଜ ଜୀବନ ଉପନ୍ୟାସକୁ ସୁନ୍ଦର ଓ ସୁଫଳ କରିବା ଉଚିତ — ତମେ ମତେ ଭଲପାଇ ଭୁଲ କରିନା ସଂଯୁ···

ଆଉ ତମେ··· ?

ହଁ, ମୁଁ ସ୍ୱୀକାର କରୁଛି···ମୁଁ ମଧ୍ୟ···

କାରଣ ଭଲପାଇବା ତଳେ ତଳେ ସଦା ସନ୍ଦେହ ଓ ଭୁଲ ବୁଝିବା ଲୁଚିରହିଥାଏ—ତାହା ଯୌବନର ପ୍ରଥମ ପାହାଚରେ ହୁଏତ ଅନୁଭୂତ ହୁଏନି ପିନା । କିନ୍ତୁ ଅପର ଅଧ୍ୟାୟରେ—ଜୀବନର କଳ୍ପନା ପଥରୁ ସ୍ୱପ୍ନିଳ ଦୀପ ଲିଭି-ଆସି ପ୍ରାଣ ଦହନର ତାମସୀ ମଧ୍ୟରେ କ୍ଷତବିକ୍ଷତ ହୁଏ—ତେଲ ଲୁଣର ସଂସାର ଦୁର୍ବହ ବୋଧହୁଏ—ଏପରି କି ଆତ୍ମହତ୍ୟା ବା ବ୍ୟଭିଗୃର ଇତ୍ୟାଦି ଚିନ୍ତା ସମ୍ପୂର୍ଣରେ ଲୋଭନୀୟ ହୋଇ ଉଠେ···ଅନେକ ମଧ୍ୟ ବିବେକ ବିରୁଦ୍ଧରେ ତାହାହିଁ ପସନ୍ଦ କରିଥାନ୍ତି ।

ତା ହେଲେ ସିପ୍ରା ମୋର କ'ଣ ଅତ୍ୟାଧୁନିକ ସଭ୍ୟତା ଗହ୍ୱରରେ ବିପଥିକ ହେବ ! ମୁଁ କିଂତୁ ତାହା ବଞ୍ଚି ଥାଉ ଥାଉ ସମର୍ଥନ କରିପାରିବିନି—ମାନସ ଅବଶ୍ୟ ଅପାତ୍ର ନୁହେଁ, ମୋର ତା'ପାଇଁ ଅଶେଷ ସ୍ନେହ; ତଥାପି ମୁଁ ଭଲ-ପାଇବାକୁ ପ୍ରଶ୍ରୟ ଦେବିନି···ତମେ ବାପା ହୋଇ କେମିତି ଯେ କିଛି ବାରଣ କରୁନା··· ?

କିନ୍ତୁ, ସଂଯୁ ମୁଁ ମୋ ନାରୁପାୟ···

ମୁଁ ଗୃହେଁ ପରିବର୍ତ୍ତନ···

କିନ୍ତୁ, ତାହା କ'ଣ ସମ୍ଭବ··· !

ତଥାପି ମୁଁ ସଂସ୍କୃତିର ସ୍ରୁତ ବିରୁଦ୍ଧରେ ସଂଗ୍ରାମ କରିବି···

ତମ ସାଫଲ୍ୟରେ ଏ ପୃଥିବୀର ପରିବାର ସୁଖୀ ହେଉ···ତମ ଉଦ୍ୟମର ମୁଁ ଶୁଭ କାମନା କରୁଛି ସଂଯୁ······ ।

---



# ଓ ଏମି ସରର କ୍ରନ୍ଦନ

ଶ୍ରୀ ..................................

ଟୋରଧାର ଉପାନ୍ତ ଅଞ୍ଚଳ-ମଲ୍ଲଗୁଣୀ ଉପକଣ୍ଠରେ ନିଶୀଥ ଶେଷ ହେବାର ଲଗ୍ନ···ତମସାର ଓଢଣୀଟିକୁ ମଥାତୋଳି ଚନ୍ଦ୍ରଭାଗାର କୋଣାର୍କ ସୀମାରୁ ଶୁଦ୍ଧିନେଇଥିବ ଶେଷ ବିଦାୟ··ନୀଳଗିରିର ସ୍ନିଗ୍ଧ ଘଞ୍ଚ ଜଙ୍ଗଲ ଭିତରେ ପବନ ଦୁଏ ତ ଏକାକୀ ଘୁରି ବୁଲୁଛି—ପାଞ୍ଚପ୍ରହରର ଦଶାଶ୍ୱମେଧ-ଘାଟ ଉପର ଲୋଃଜନ୍ତାଇ ଅଳସ ଭଙ୍ଗି ଦେଇ ଉଠିଥିବ···ପୁରୀର ଦକ୍ଷିଣ ଶୁଣ୍ଡ ନିକଟରେ ସାଗରର ଢେଉ ମନ୍ଥର ହୋଇ ଆସିବଣି···ଶ୍ରୀମନ୍ଦିରର ଗୋଲାପ ବଣର ଭେଟେରାଟର ବାକଣି ଉଠିବଣି ସଦ୍ୟ ଗୋଲାପର ଗୁଚ୍ଛ···ମନଟା କେମିତି ଭାବନା ବିହ୍ୱଳ ହୋଇ ଉଠିଲା···

କାହାର ଗୋଟିଏ ଦରଦୀ କଂଠର ଅସ୍ପଷ୍ଟ ବିଳାପ ଭାସି ଆସୁଚି ··· ମନ କଣରେ ଅନୁଭୂତିର କ୍ଳାନ୍ତି···ସମ୍ମୁଖରେ ଦୁଇଟି ଅଞ୍ଜଳି ଅର୍ଘ···ଜୀବନର ଚଲାପଥ ଧାରରେ ବୁଲୁଛି ଅଶ୍ରୁର ଝରଣା···

ମିଥ୍ୟାର ପ୍ରାଚୀର ଗଢ଼ି ବାପା ଲୁହନ୍ତି—ତମେ କ'ଣ ପାଞ୍ଚବର୍ଷ ଅପେକ୍ଷା କରି ପାରିବ ? କନ୍ୟାପିତା ବୃନ୍ଦଙ୍କ ଦମ୍ଭ ଦବାଯାଏ···କେବେ କେବେ ଜାତିର ଓ ଧନିକଶ୍ରେଣୀର ପ୍ରସ୍ତୁ ବେଶରେ ବାପା ତାଙ୍କ ମନବୃତ୍ତିକୁ ଲୁଚାଇ ରଖନ୍ତି···

କିନ୍ତୁ, ଅଜ ଯେଉଁ ବଂଶ ଆଭିଜାତ୍ୟରେ ପରିପୂର୍ଣ୍ଣ ସେ କ'ଣ ଅତୀତରେ ଠିକ୍ ସେଇଆ ଥିଲା ବା ଭବିଷ୍ୟତରେ ଠିକ୍ ସେହିପରି ରହିବ ? ଆଭିଜାତ୍ୟ କ'ଣ ବଂଶର ପରଂପରା; ଯାହାକି ମଣିଷ ଜୀବନ ଭଳି କ୍ଷଣିକ ଓ ଅନିଶ୍ଚିତ ନୁହେଁ ? ଗୁଣବତୀ କନ୍ୟା ଗରିବ ହେଲେ କି ସେ ବ୍ୟକ୍ତିତ୍ୱ କ'ଣ ମୂଲ୍ୟହୀନ··· ? ? ମଣିଷ ତେବେ ହୃଦୟହୀନ ଓ ଅବିବେକୀ ହୁଏ କାହିଁକି ? ??

ବାପା ଲୁହନ୍ତି ଶ୍ରୀ କନେଇଲାଲଙ୍କୁ ଦାସ, ଆଇ. ଏ: ଏମ୍ ରେ ପ୍ରଥମସ୍ଥାନ ଅଧିକାର କରିଥିବା ତାଙ୍କ ଦୁଆରେ ବାଇଶି ହଜାର ଟଙ୍କାର ଗୋଟିଏ କାର—

ନଗଦ ଲକ୍ଷେ ଟଙ୍କା ଆଉ ସମସ୍ତ ଯୌତୁକ ସହ ସୁଶ୍ରୀ ଜଣେ ଉଚ୍ଚ ଶିକ୍ଷିତା ଆସି ପହଞ୍ଚିଲେଣି···ମୋ ପୁଅ ବିଦେଶୀ ଡିଗ୍ରୀ ଧାରୀ ଡ କ୍ଟର, ମୁଁ ଯୌତୁକ ଗ୍ରହଣ କରିବା କ'ଣ ଅପରାଧ···?

ମତେ ଧନେ ଧନେ ଗୁମାସ୍ତା ଅସି କୁହନ୍ତି—ବାବୁ, ବାଲେଶ୍ୱର ଜମିଦାରଙ୍କର ଢଗ୍ରା ଯେତେ ଯୋତା ସେତେ—ଗୋଟିଏ ବୋଲି ଝିଅ ମାଧୁରୀ—ଗୋଟିଏ ଗୁଞ୍ଜଳରେ ଗଢ଼ା—ସାକ୍ଷାତ ଲକ୍ଷ୍ମୀଛ ! ଗୁଣ କ'ଣ କହିବି ! ବାପାଙ୍କ ମନକୁ ଭରି ମାନଚି—ଆପଣ ଯଦ ରାଜି ହୁଅନ୍ତେ···

ବିରକ୍ତ ହୋଇ କହିଲି—ଗୁମାସ୍ତା—ଆପଣ ବାରମ୍ବାର ମତେ ବିବାହ ବିଷୟରେ କେବେ କିଛି କହିବେନି—ଆପଣ ବୟସରେ ମୋଠାରୁ ବହୁତ ବଡ଼—ମୁଁ ଆପଣଙ୍କୁ ସମ୍ମାନ ଦେଖାଏ—କିନ୍ତୁ ମତେ ବିବାହ ବିଷୟରେ ସଦାବେଳେ ପ୍ରଶ୍ନ କରିବା ଭଲ ହେଉନି···ମୁଁ ଆଉ ସେ ବିଷୟରେ ଅଧିକ ଆଲୋଚନା କରିବାକୁ ଭଲ ପାଏନି···

ଅକୃତକାର୍ଯ୍ୟ ହୋଇ ଗୁମାସ୍ତା ଫେରିଗଲେ—ବାପା ତାଙ୍କୁ ନିଶ୍ଚୟ ଅପଦାର୍ଥ ବୋଲି ଆଖ୍ୟା ଦେଇଥିବେ—ଆଉ ଗୁମାସ୍ତା ବାପାଙ୍କଠାରୁ ଲାଞ୍ଚ ପାଇବାର ଯେଉଁ ମୋହକୁ ମନ ତଳେ ରୂପ ଦେଇ ଧାଇଁ ଆସିଥିଲେ ସେ ବୋଧେ ତାଙ୍କର ବୁକୁରେ ଜଳି ପାଉଁଶ ହୋଇ ଯିବଣି···

ଦିଲୀପ୍ ମୋର କଲେଜ ବନ୍ଧୁ—କାଲି ସଂଜରେ ଗପ କରୁ କରୁ ନାନା ମଜାକଥା ଆଲୋଚନା ହେଲା—ପରିସ୍ଥିତିର ସୁଯୋଗ ନେଇ ସିଏ ଆରମ୍ଭ କଲା—ବାପା ବୃଦ୍ଧ ହେଲେଣି—ତୋତେ ପାଠ ପଢ଼େଇ ମଣିଷ କଲେ—ତାଙ୍କ ମନରେ ଅଶାନ୍ତି ଆଣିବା ଭଲ ନୁହେଁ—ସେମାନେ କ'ଣ ନିଜ ପାଇଁ କହୁଛନ୍ତି—ତୋର ଭବିଷ୍ୟତ ଲାଗି ତାଙ୍କର ସମସ୍ତ ଚିନ୍ତା—ପୁଣି ନିକଟସ୍ଥ ରୂପାଂଶ ଗଡ଼ର ଜମିଦାର କହୁଛନ୍ତି ଘରଜୋଇଁ କରିନେବେ—ବିରାଟ ଜମିଦାରୀ—କୋଟି କୋଟି ଟଙ୍କା କରଜ ଦିଆଯାଇଛି; କୋଉଥିରେ ଊଣା ନୁହେଁ —ଝିଅଟି ଠିକ୍ ଆମ କଲେଜର ଚନ୍ଦ୍ର ରେଖାଭଳି—ଦୁହିଁଙ୍କି ଏକାଠି ଠିଆକଲେ—କିଏ ସେ ଚନ୍ଦ୍ରରେଖା ଆଉ କିଏସେ ତୋର ଭାବି ପତ୍ନୀ ହଠାତ୍ କିଛି ଚିହ୍ନି ହେବନି—ତୁତ ମିସ୍ ମିଶ୍ର, କଲ୍ୟାଣୀ, ମିସ୍ ରାଉତ, ମିସ୍ ଦାସ, ମିସ୍ ·ରାଓ, ମିସ୍ ନାଏକ, ଉର୍ମିଳା ଏବଂ ସୁତପା ଓ କାଜଳ ପ୍ରଭୃତିଙ୍କୁ ଦେଖି ପାଗଳ ହୋଇ ଯାଉଥୁ—କିନ୍ତୁ ସେ ଝିଅଟି—ଅର୍ଥାତ୍ ରୂପବତୀ ବସୁନ୍ଧରାଙ୍କୁ ଯଦ ପାଇବୁନା···ତୋ ଭଳି ଭାଗ୍ୟବାନ୍ ବୋଧେ ପୃଥିବୀରେ ଅଦ୍ୱିତୀୟ ··

ସବୁ ବୁଝିପାରୁଛି ଦିଲୀପ··· ତୁ ବୋଧେ ବର୍ତ୍ତମାନ ବାପାଙ୍କ ସହିତ ଦେଖା ହୋଇ ଆସିଚୁ—ନଇଲେ ଏତେ ଘରକରଣା ମନବୃତ୍ତି କୋଉଠୁ ପାନ୍ତୁ—ତୁ ବି ପାଗଳ ହେଲୁଣି ଦିଲୀପ୍ ! ମୁଁ କ'ଣ ଶିଶୁ ହୋଇଛି ମୋତେ ଜଣକ ପରେ ଜଣେ ଆସି ବୁଝେଇ ମନ ପରିବର୍ତ୍ତନ କରିଦେବେ···

ଦିଲୀପ୍ ହସି ହସି କହିଲା—ଅରେ ପଇସା ପରେ ଯେମିତି ବାକଲ ହୋଇ କହିଲେ—ତାଙ୍କର କଥା ରଖି ମୁଁ ମୋର କର୍ତ୍ତବ୍ୟ କରିଚି—ତୁ ତାହା ହେଲେ କେତେ ନହେଲେ କେତେ— ମୋର କ୍ଷ ଯାଏ ଆସେ—ହଇରେ ମୁଁ ପରା ଆଜନ୍ମ ଯୌତୁକର ବିପକ୍ଷରେ—ଆଜି କଣ ସୂର୍ଯ୍ୟ ପଶ୍ଚିମ ଦିଗ୍‌ବଳୟରୁ ଉଇଁଲେ ଯେ ମୋର ଦୃଷ୍ଟି କୋଣ ହଠାତ୍ ଓଲଟି ଗଲା···ଗୋଟାଏ ଶସ୍ତା ପ୍ରସ୍ତାବରେ···?

ଶୁଣିଲୁଣି—ଦାସ ଆଇ. ଏ. ଏସ୍. ପାଶ୍ କଲା ପରେ ତା'ର ମନରେ ଗୋଟାଏ ନୂଆ ସ୍ପନ୍ଦନ ଦେଖା ଦେଇଚି—ସିଏ ଦିଲ୍ଲୀର ଜଣେ ବିଧବାଙ୍କୁ ବିବାହ କରିବା ଲାଗି ମନସ୍ଥ କରିଚି—ତା'ର ବାପା ଗଠି ଦେଇ ଦେଲେ ବେଦମ୍—କିନ୍ତୁ ଶାସ୍ତ୍ରିଏ ମଧ୍ୟ ଉତ୍ତର ଆସି ପହଞ୍ଚୁନି···

ବିଧବା ସୁଧାରାଣୀଙ୍କ ସହ ଜନ୍ମେଜୟଙ୍କ ବିବାହ ନିଷ୍ପତ୍ତି ଭଲ ଲାଗିଲା ଦୁହେଁ ଖୁସିହେଲୁ—ସେ ବିଷୟ ମଧ୍ୟ ବାପାଙ୍କ କାନକୁ ଗଲାଣି—ସେ ତାଙ୍କର ଜିଦ୍ ଆଉ ଅଧିକ ଦିନ ରଖି ପାରିବେନି ବୋଲି ଦିଲୀପ୍ ମତେ ସାନ୍ତ୍ୱନା ଦେଲା··ସତ୍ୟତାର ତେଜ ତାଙ୍କୁ ନିଷ୍ଠୁର ସହୃଦୟତା ଆଣିଦେବ—ସିଏ ଅତ୍ୟାଧୁନିକ ରୁଚିର ସ୍ରୋତସ୍ୱିନୀରେ ପ୍ରଭାବିତ ହୋଇ ନୂତନତା ସହିତ ପାଦ ମେଳାଇ ଚାଲିବେ··

ମୁଁ ବେଳେ ବେଳେ ଦୁର୍ବଳ ହୋଇ ପଡ଼େ—ବିକ୍ରମଙ୍କ ସହିତ ମୋର ବିବାହ ଅମୀମାଂସିତ ହୋଇ ଦୀର୍ଘ ଏକବର୍ଷ ହେଲା ରହିଲାଣି—ବାପା କାନ୍ତୁ, ଗୃହାଙ୍ଗନ କେବଳ ସୁଶ୍ରୀ, ଗୁଣବତୀ ବା ସୁଶିକ୍ଷିତା···ତାଙ୍କର ଟଙ୍କା ଆବଶ୍ୟକ—ତାଙ୍କର ଅଭିଜାତ୍ୟ ଲୋଡା ··

ବଜାର ଦରଠାରୁ ଅଧିକ ଦର୍‌ରେ ମୋର ବ୍ୟକ୍ତିତ୍ୱକୁ ବିକିବା ଲାଗି ତାଙ୍କର ଉତ୍କଣ୍ଠା—ବିବାହକୁ ଭୂମି କରି ପ୍ରାପ୍ୟ ଦୁଇଶହ ହେବ ପ୍ରସ୍ତାବ ବାପା ମୋ ନିକଟରେ ପହଞ୍ଚେଇଛନ୍ତି—ସେ ଫାଙ୍କାନ୍ତରେ ଅସଂଖ୍ୟ ଗଠେ ମୋ ଟ୍ରଙ୍କରେ ବିକ୍ଷିପ୍ତ ଭାବରେ ପଡ଼ି ରହିଥିଲା—ଆଉ ପଚିଶରୁ ଅଧିକ ତରୁଣୀଙ୍କ ପ୍ରତିଛବି ମଧ୍ୟ ଲଫାପାଗୁଡ଼ିକରେ ଅଯତ୍ନରେ ଜମାହୋଇ ରହିଥିଲା··· ମୁଁ ସେସବୁ ଆଜି ପୋଡ଼ି ଭସ୍ମର ଢିବିର ଦେଉଥିଲି—ମନ ବିଶେଷ ଭଲ ନଥାଏ ··

ଜୀବନର ପରିସର ମଧ୍ୟରେ ଅସୀମ ଓ ଅକ୍ଲାନ୍ତ ସାଧନା ଠିଆ ହୋଇଛି ।

ଆକସ୍ମିକ ଭାବରେ ପୂରବୀଙ୍କ ଟେଲିଫୋନ ଆସି ମୋତେ କହିଦେଇ ଗଲା—ସଂଜରେ ତାଙ୍କ ଘରକୁ ଯିବାଲାଗି—ପୂରବୀଙ୍କ ସହିତ ମୋର ପରିଚୟ ଖୁବ୍ ମଧୁର—ସେ ମୋର ଭାବୀ ପତ୍ନୀ ଶୁକ୍ଲାଙ୍କର ବନ୍ଧୁ—ସେ ନିହାତି ମୂର୍ତ୍ତିମତୀ ଏବଂ ତାଙ୍କ ମମତା ଅତି ପବିତ୍ର ଓ ଅପଣାର··· ପୂରବୀଙ୍କର ଅଧରର ଢେଉ, ଗଣ୍ଡର ପ୍ରୀତିଲ ଉଙ୍କିଁ ଆଉ ନିଦଟବାଳା ଆଖିର ଅସଜଡ଼ା ଭାବଗୁଚ୍ଛ ମତେ ଭାରି ଭଲଲାଗେ···ମୋ ନିକଟରେ ତାଙ୍କ ତନୁ ତନିମା ଏତେ ଶୋଭନୀୟ ଓ ଲୋଭନୀୟ ହୋଇ ଉଠେ ଯେ, ମୁଁ···ତାଙ୍କୁ ଦେବରାଜ୍ୟର ପ୍ରତିମୂର୍ତ୍ତି ବୋଲି ଭାବେ—ତାଙ୍କ ତନୁ ନିକଟରେ ପୃଥିବୀର ଅସଂଖ୍ୟ ତନ୍ୱୀଙ୍କ ପ୍ରସ୍ଫୁଟିତ ତନୁଲତାକୁ ମାପେ—କିନ୍ତୁ ପ୍ରତ୍ୟେକ ପୂରବୀଙ୍କ ବ୍ୟକ୍ତିତ୍ୱ ଏବଂ ରୂପଶ୍ରୀରେ ନିଜ ନିଜର ଅସ୍ତିତ୍ୱ ହରାଇ ବସନ୍ତି···

ପୂରବୀ ଖୁବ୍ ମନଖୋଲା ମଜାଳିଆ କଥା କହନ୍ତି—ତାଙ୍କ ସଙ୍ଗେ ପ୍ରତିଟି ମୁହୂର୍ତ୍ତ ଉପଭୋଗ୍ୟ ହୋଇ ଉଠେ···

ପୂରବୀ ଶୁକ୍ଲାଙ୍କର ବନ୍ଧୁ—ତେଣୁ ସ୍ୱଭାବରେ ମୋର ବନ୍ଧୁ ହେବେନା—ଶାଳୀ ହେବେ ସେଇକଥା ମନେ ମନେ ମୁଁ ଗଣ୍ଠିଅରେ ଅନେକ ସମସ୍ୟା ଭାବେ—ସେ ବଗିଚାରେ ମୋର ଅଭିଜ୍ଞତା କମ୍, ତେଣୁ କୌଣସି ସମାଧାନରେ ପହଞ୍ଚି ପାରେନି···



ସେ ଯାହା ହେଉ ଆମ ଦୁହିଁଙ୍କର ସମ୍ପର୍କ ଅତି ନିବିଡ଼···ସେହିଭଳି ଶୁକ୍ଲାଙ୍କ ସହିତ ସମ୍ପର୍କ ବି ଅତି ପବିତ୍ର—ଶୁକ୍ଲା ଯେ ମୋର ପ୍ରେମିକା ବା ମୁଁ

ତାଙ୍କୁ ଭଲ ପାଇ ବିବାହ କରିବାକୁ ଇଚ୍ଛା କରେ ତା' ନୁହେଁ—ତାଙ୍କ ବ୍ୟକ୍ତିତ୍ୱର କଳା ମତେ ଭଲ ଲାଗେ—ମୋତେ ଭଲ ଲାଗିବାର ସମସ୍ତ ଉପାଦାନ ମୁଁ ପାଇଚି ତାଙ୍କର ମନ ଓ ଚରିତ୍ର ଦେଉଳରେ···

ପୁରବୀ ଯେ ମତେ ବିବାହ ବିଷୟରେ ପଚାରି ପାରନ୍ତି —ସେ ଅଶଙ୍କା ବୁକୁତଳେ ଜନ୍ମ ନେଇଥିଲା—ଏ ବର୍ଷର ବିବାହ ଋତୁ ଶେଷ ହୋଇ ଆସିଲାଣି—ଝିଲ୍ଲୀଙ୍କ ସାଙ୍ଗର ଓ ବୟସର ସବୁ ଝିଅମାନଙ୍କର ବିବାହ ହୋଇ ସାରିଲାଣି—ଝିଅଟିଏ ଆଜ କେତେଦିନ ଅବା ଅପେକ୍ଷା କରିବେ—ସେ ଯେ ମୋ'ଲାଗି ନାନା ଦରିଦ୍ରୀ ଅଭିଜ୍ଞ ବାତାବରଣ ମଧ୍ୟରେ ଗଢ କରୁଥିବେ—ତାହା ଯଥେଷ୍ଟ ଅନୁଭୂତ ହୋଇଚି—ତଥାପି ମୁଁ ନିରୁପାୟ—ବାପା ସିନା ମୋର ମନକଥା ଅନୁଭବ କରିପାରୁ ନାହାନ୍ତି—ମୁଁ କିନ୍ତୁ ହଠାତ୍ ତାଙ୍କ ଇଚ୍ଛା ବିରୁଦ୍ଧରେ ଗୋଟାଏ କିଛି କରିବାକୁ ପସନ୍ଦ କରେନି—ତାଙ୍କ ମତ ଆସ୍ତେ ପରିବର୍ତ୍ତିତ ହୋଇପାରେ ବୋଲି ମୋର ବିଶ୍ୱାସ ଥାଏ—ସେଇଥିଲାଗି ମୁଁ ନୀରବ ଥିଲି···ନୀରବତାହିଁ ମୋର ଏକମାତ୍ର ଭରସା ଥିଲା···

ଆସନ୍ନ ସଂଜ······

ମୁଁ ପୂରବୀଙ୍କ ଘରକୁ ଯିବାଲାଗି ପ୍ରସ୍ତୁତ ହେଉଥାଏ—ମୋର ହାଇ-ପଣଶାର—ପାଦ ବୁଢ଼ା ଆସି ପହଞ୍ଚିଲେ—ସେ ସ୍ୱଭାବରେ ଥଟ୍ଟା ହୁଅନ୍ତି—କହିଲେ, ଆହେ ଡାକ୍ତର ବାବୁ ମୁଁ ଶୁଣିଥିଲି ଅପଣ କୁଆଡ଼େ ଆମ୍ଭ ରାଜାଙ୍କ ଝିଅ ଭାଗ୍ୟଲକ୍ଷ୍ମୀଙ୍କୁ ବାହା ହେଉଛନ୍ତି···

କହିଲି—ଆମ୍ଭ ରାଜାଙ୍କର ତ ଝିଅ ନାହାନ୍ତି ··

ଅହେ ନାହାନ୍ତି ସିନା, ଝିଅ ହେବାକୁ କ'ଣ ମନା—ରାଣୀ ବର୍ତ୍ତମାନ ଗର୍ଭବତୀ—ଜ୍ୟୋତିଷ କହିଚି ଝିଅଟିଏ ହେବ—ସେ ତମକୁ ଜୋଇଁ କରିବାଲାଗି ଅଗରୁ ବାପାଙ୍କୁ ବହୁଣା ଟଙ୍କା ଦେଇ ସାରିଲେଣି···ତୁମେ କିଛି ଜାଣିନା—ହଉ ଝିଅଟିଏ ଗୁହୁଁ ଗୁହୁଁ ବୟସ୍ଥ ହୋଇଯିବ ଯେ···ଅଳପ କେତୁଟା ବରଷ ମଝାରେ ଗଲେ ହେଲା···

ଟିକ୍ ସେତିକିବେଳକୁ ଗ୍ରାମାସ୍ତା ଆସି ପହଞ୍ଚିଥିଲେ—ତାଙ୍କୁ ଦେଖି ଜେଜେ କହିଲେ—ମୁଁ ଏଇନା ବାବୁଙ୍କୁ ସେଇ ଅମ୍ଭ ରାଜାଙ୍କ କଥା କହୁଥିଲି—ବାବୁ କ'ଣ ଅରାଜି ହେବା ଲୋକ —ସେ କ'ଣ ବାପାଙ୍କ କଥାରୁ କେବେ ବାହାର ହୋଇ ପାରନ୍ତି···

ଏତକ ଶୁଣି ଗୁମାସ୍ତାଙ୍କର ତୃପ୍ତିର ସୀମା ଦିଗ୍‌ବଳୟକୁ ବ୍ୟାପି-ଯାଇଥାଏ—ମୁଁ ସେ ନାଟକୀୟ ଭୂମିକା ବୁଝିବାକୁ ଚେଷ୍ଟା ନ କରି ଚୁଲିଯାଇଥିଲି—ଅବଶ୍ୟ ବାପାଙ୍କ ପକ୍ଷେ ତାହା ଅସଙ୍ଗତ ନୁହେଁ—ପୌତ୍ରିକ ମୁଖ୍ୟ···ବୋହୂ ଗୌଣ ବାପାଙ୍କ ଦୃଷ୍ଟିରେ ···

× × × ×

ସାମାନ୍ୟ ବଳମ୍ବରେ ପହଞ୍ଚିଥିଲି—ପ୍ରତୀକ୍ଷମାଣା ହୋଇ ମୋର ବାଟକୁ ପୂରବୀ ଚାହିଁ ରହିଥିଲେ—ତଳ ପାହାଚରେ ପାଦ ଦେଉଣୁ—ସିଏ ନମସ୍କାର କରି ପାଖେଇ ନେଲେ—ଡ୍ରଇଁ ରୁମ୍‌କୁ—ପୂରବୀ ଏବଂ ମୁଁ ପାଖାପାଖି ବସିଲୁ—ପୂରବୀଙ୍କ ଜ୍ୟେଷ୍ଠ ଭଉଣୀ ସୁଷମା ଗୁଣୁଗୁଣୁ ହୋଇ ଗୀତ ବୋଲୁଥାନ୍ତି—ଏକ୍‌ଜିବିସନ୍‌ରୁ ଆଣିଥିବା ପଙ୍ଖାରେ ବାଞ୍ଚୁଥାନ୍ତି—ଟେବୁଲ୍ ଫ୍ୟାନ୍‌ଟା ମରାମତି ହେବାଲଗି ଯାଇଥାଏ···

ସୁଷମାଙ୍କୁ କଷ୍ଟ ଦେବାକୁ ଭଲ ଲାଗିଲାନି—ତାଙ୍କ ହାତରୁ ପଙ୍ଖାଟି ଟାଣି ଆଣିଲି—ପୂରବୀ ମୋତେ ବାଧା କରି ପଙ୍ଖାଟି ନେଇଗଲେ ଏବଂ ନିଜେ ଠିଆ ହୋଇ ମତେ ବାଞ୍ଚିବାକୁ ଲାଗିଲେ—ସ୍ୱେଦ ଶୁଖି ଆସୁଥାଏ—ଭିତର ଘରୁ ସୁଷମା ଚେତ୍ରରେ ଚା, ଜଳଖିଆ ନେଇଆସି ପାଶ ଟିପୟ ଉପରେ ରଖିଲେ··

ସାଧାରଣତଃ ଝିଅମାନେ ସଦାସର୍ବଦା ଗୃହାନ୍ତ ଆମର ପକ୍ଷରୁ କଥା ଆରମ୍ଭ ହେଉ—ପୂରବୀ ବି ଲାଜରେ ସେ ପର୍ଯ୍ୟନ୍ତ ମତେ କିଛି କହି ନ ଥାନ୍ତି—ମୁଁ ବି ଆଶଙ୍କାରେ ଛନ୍ଦହୋଇ ରହିଥାଏ···

ଖାଇବା ପ୍ରସଙ୍ଗରେ ନାନା ମଜାଳିଆ କଥା ଆରମ୍ଭ ହେଲ—ପ୍ରଥମେ ମୁଁ ଖାଇବାକୁ ରାଜି ହେଉ ନ ଥିଲି—ସିଏ ବାଧ କରି ଗୁଡ଼ାକେ ଦିଅଇ ଦେଲେ—ତାଙ୍କର ଜ୍ୟେଷ୍ଠ ଭଉଣୀ ସୁଷମା ପୂର୍ବଭଳି ଗୁଣୁଗୁଣୁ ହୋଇ ବିସ୍କୁଟ୍ ଖଣ୍ଡେ ପାଟିରେ ଦେଲେ—ଟଣାଓଟରା ଆଉ ମଜାଳିଆ ଗପରେ ସେ ଲଗ୍ନଟି ଅତି ଉପଭୋଗ୍ୟ ହୋଇ ଉଠୁଥାଏ···

ପୂରବୀ ହଠାତ୍ ମତେ ଜୋଇଁ ବୋଲି ସମ୍ବୋଧନ କଲେ—ମୁଁ କିଛି ବୁଝି ପାରିଲିନି—ଭାବିଲି—ସେ ବୋଧେ ବୋଡାର ଶିଳ୍ପୀ ସୁଷମା ଅର୍ଥାତ୍ ତାଙ୍କ ସାନ ଭଉଣୀକୁ ମୋ ସହିତ ବିବାହ ଦେବେ···ବା ସେଇମିତି କିଛି ମୁଁ ସନ୍ଦେହୀ ହୋଇ ପଡ଼ିଲି । କେତେ କ'ଣ ମନ ମଧ୍ୟରେ ଜମାଟ ବାନ୍ଧିଥିଲା । ବର୍ତ୍ତମାନ ସେସବୁ ଠିକ୍ ମନେ ଆସୁନି···

ପୂରବୀ ପୁଣି କହିଲେ—ମୁଁ ଗୋଟିଏ ଝିଅ କରିଚ ତାଁ'ର ସହିତ ଆପଣଙ୍କର ବିବାହ ହେବ—କାଲି ସମ୍ଭୁଧୀ ଆସି ଥିଲେ—ତାଙ୍କ ସହିତ ଚୁକ୍ତି

ହୋଇଚ—ପଚୃଶ ହଜାର ଟଙ୍କା, ପଚିଶ ହଜାର ଟଙ୍କାର କାର୍, ଏବଂ ଝିଅଜୋଇଁଙ୍କ ଲାଗି ଲକ୍ଷେ ଟଙ୍କାର ଗହଣା ଓ ସମସ୍ତ ଆସବାବ ଦେବ—ଆଉ ଆମର କାଠଯୋଡ଼ି କୂଳରେ ଥିବା ମହଲା ବାରିଷ୍ଟରଙ୍କ କୋଠା ନିକଟ କୋଠାଟି ଦେବ—ସମ୍ବନ୍ଧୀ ରାଜି ହୋଇଛନ୍ତି...

ଆପଣ ଯଦି ଚାହାନ୍ତି ମୁଁ ଝିଅକୁ ଦେଖାଇଦେବ—ଝିଅଟି କାଶ୍ମୀରର ଏକ ସମ୍ଭ୍ରାନ୍ତ ବଂଶରେ ଜନ୍ମ ନେଇଥିଲା—ଅତି ସୁନ୍ଦରୀ, ଗୁଣବତୀ ଆଉ ସୁଚରିତ୍ରା...ତା'ର ଯେଉଁ ବ୍ୟକ୍ତିତ୍ୱ ଆପଣଙ୍କୁ ନିଶ୍ଚୟ ଭଲ ଲାଗିବ—ଆପଣଙ୍କ ମନକୁ ମାନିଲାଭଳି ଝିଅଟିଏ—କୌଣସି ଗୁଣରେ ସିଏ ଊଣା ନୁହେଁ...ଆପଣଙ୍କ ସଂଗେ ବିବାହ ହେଲେ ନିଶ୍ଚୟ ଭାରି ଭଉଣୀ ଭଳି ଦିଶିବେ – କ'ଣ କହୁଛନ୍ତି ନୀରବ ରହିଲେ ଯେ...

ପୂରବୀଙ୍କ କଣ୍ଠରେ ଅଜସ୍ର ପ୍ରଶଂସା ··ନିଜ ପାଳିତା କନ୍ୟାଲାଗି—କିନ୍ତୁ ସୁଷମାଙ୍କ ଆଖି ଆଉ ଅଧର ଅସଂଯତ ଓ ବିବସ୍ତ୍ର । ନିହାତି ଚପଳ... ମନେ ହେଉଥାଏ ସତେ ଯେମିତି ସେ କାଳୁ ଉପହାସ କରି କହିବାକୁ ଚାହାନ୍ତି...

ପୁଣି ପୂରବୀ କହି ଚାଲିଲେ—ଗରିବ ଝିଅଙ୍କ ସହିତ ବିବାହ କରିବା ଉଚିତ ହେବନି—ବାପାଙ୍କ ଇଚ୍ଛା ବିରୁଦ୍ଧରେ ଯାହା କାଳୁ କଲେ ଅମଙ୍ଗଳ ହବ—ଦୁର୍ବହ ଜୀବନ ଅଶାନ୍ତିରେ କ୍ଷତ ବିକ୍ଷତ ହେବ...ଦାମ୍ପତ୍ୟ ବିଦଗ୍ଧ ହେବ ବାପାଙ୍କର ଅତୃପ୍ତ ମନ ଲାଗି—କେତେ କ'ଣ ନୀତି ବାକ୍ୟ ଆଉ ଉପଦେଶ ବାଢ଼ି ଚାଲିଥାନ୍ତି ପୂରବୀ, ସୁଷମା ମୋ'ର ହାତ ଧରି ମୋତେ ଭିତରକୁ ଟାଣି ନେଲେ···ବୋଧେ ଦେଖାଇବା ଲାଗି—

ଗୋଟିଏ ଉମସାଭରି କୋଠରୀ ହଠାତ୍ ଅଲୋକିତ ହେଲା— ପୂରବୀ ନିଜେ ମୋତେ ଅତି ଆପଣାର କଣ୍ଠରେ—ଠିକ୍ ଜଣେ ଶାଶୁର ଭୂମିକାରେ କହୁଥାନ୍ତି—ଅପଣ ଅରାଜି ହୁଅନ୍ତୁନି—ମୋର ସମ୍ବନ୍ଧୀଙ୍କ ସହିତ ନିଷ୍ପତ୍ତି ହୋଇ ଯାଇଛି—ଆପଣ ମୋ'ର କଥା ରଖିବେ···ଏ' ଭରସା ମୋର ଅଛି···ମୁଁ ଆପଣଙ୍କ ପାଦତଳେ କନ୍ୟାକୁ ଦେଇ ସୁଖୀ ହେବ—

ପୂରବୀ ଦୁଆରର ପରଦାଟି ଟାଣି ଦେଲେ—ସୁଷମା କାଶ୍ମୀର ତନ୍ୱୀଙ୍କ ନିକଟକୁ ଲାଗିଯାଇ—ସବୁ ଓଢ଼ଣୀଟି ଟୋକା ଧରିଲେ···

× × ×

ପୂରବୀ···ଏତ ମାଟିର କଣ୍ଢେଇ ! ···ପ୍ରାଣହୀନ !! ତେବେ ମୋ ସହିତ···?

ହଁ ମାଟିର କଣ୍ଢେଇ—କିନ୍ତୁ ମୁଁ ତାକୁ ସ୍ନେହ ଦେଇ ଝିଅ କରିଚି—ମୁଁ ବିବାହ ଦେବ—ଆପଣଙ୍କ ବାପାଙ୍କ ସହିତ ମୋର ନିଷ୍ପତ୍ତି ହୋଇଚି···

ଏମାନଙ୍କ ଆପଣଙ୍କ ସହିତ ବିବାହ ଦେବାଲାଗି ମନଙ୍କ ମଧ୍ୟ ଶେଷ ହୋଇଛି...
ମୁଁ ଅଜସ୍ର ଟଙ୍କା ଦେବି । ସେ ଟଙ୍କା କ'ଣ ମାଟି କଣ୍ଢେଇକୁ ରକ୍ତମାଂସ ଶରୀରରେ ପରିଣତ କରି—ଜୀବଦାନ ଦେଇ ପାରିବନି ? ଅଚ୍ଛା ହଉନି.. ମୋର' ଅଶାର ଡାକ୍‌କୁ, ଧୂଳିରେ ପୋତି ଦିଅନି...ସାଗରରେ ବୁଡ଼ାଇ ଦିଅନି ବା ଅଗ୍ନିରେ ଜଳାଇ ଦିଅନି..

ମୁଁ କିଛି କହି ପାରୁ ନଥାଏ—ମୁଁ ନିର୍ବାକ...ନିସ୍ପନ୍ଦ...ମୋର ବିଷଣ୍ଣତା ଦୁହିଁଙ୍କୁ ଆଘାତ ଦେଲା—ପୂରବୀ ତାଙ୍କ ପଣତରେ ମୋର ମୁହଁର ସ୍ୱେଦ ପୋଛୁ ପୋଛୁ ପୁଣି ଭିତରକୁ ନେଇ ଆସିଲେ—

କିଛି ସମୟ ବସିବା ପରେ—ସୁଷମା ଗୋଟିଏ ଶଠି ଆଣି ମତେ ପଢ଼ିବାକୁ ଦେଲେ—ବାପାଙ୍କ ହାତ ଲେଖା—ପୂରବୀଙ୍କୁ ସମ୍ପତ୍ତିଶୀ ବୋଲି ସମ୍ବୋଧନ — କଣ୍ଢେଇ ସହିତ ତାଙ୍କର ଯେତିକି ଜହ୍ଲଣ୍ଡା ଓ ସ୍ୱୀକୃତ ସମସ୍ତ ଜମା ହୋଇଛି ଶଠିଟିରେ—ମଥା ମୋର ତଳକୁ ନତ ହୋଇଗଲା—ମଣିଷ ମରଣଶୀଳ ନ ହୋଇଥିଲେ ଯେ ଅଜ୍ଞ କେତେ ସ୍ୱାର୍ଥପର ନ ହୁଅନ୍ତା... !
ବାପାଙ୍କ ନିକଟରେ ରତ୍ନାଙ୍କ ବ୍ୟକ୍ତିତ୍ୱ ଯଥେଷ୍ଟ ନୁହେଁ—ରତ୍ନା ଯଦି ଧନୀର ସନ୍ତାନ ହୋଇଥାନ୍ତେ ତା' ହେଲେ ବେଶ୍ ମତେ ବଜାର ଦରରୁ ଉଚ୍ଚା ଦରରେ କିଣି ପାରିଥାନ୍ତେ ..କିନ୍ତୁ ଅନୁତପ୍ତ ମୁଁ...ଅଭିଶପ୍ତ ବିବେକକୁ ନେଇ ଫେରି ଆସିଲାବେଳେ ବାଟ ଓଗାଳି ସୁଷମା ମୋତେ ବାଧ୍ୟ କଲେ—ଶେଷ ଜବାବ ଦେଇ ଆସିବାକୁ—ମନରେ ମୋର ତାଏଣ୍ଡୁରୁପୂର୍ବ୍ବ୍ବାଏ...

ଗରିବ ସମାଜପ୍ରତି ବାପାଙ୍କର ଅବହେଳା ଏବଂ ଘୃଣାଭାବ ମତେ ଭଲ ଲାଗେନି । ଗରିବ ବି ମଣିଷ ତାକୁ ଏ ଅଭିଶପ୍ତ ଦୃଷ୍ଟି କୋଣରୁ ଯେ କାହିଁକି ବାପା ବିଚାର କରନ୍ତି—ସେଇ କଥା ଅନେକ ସମୟରେ ମୁଁ ବି ଭାବି ଭାବି—ଦୁଃଖିତ ହୁଏ ।

ବାପା ବିଭିନ୍ନ ପର୍ଯ୍ୟାୟରେ ଚେଷ୍ଟା କରନ୍ତି ରତ୍ନାଙ୍କ ସହିତ ବିବାହ ନ କରିବା ଲାଗି— ଉଚ୍ଚ ଶିକ୍ଷିତାମାନଙ୍କ ସହିତ ଜୀବନ ଦୁର୍ବହ ଏବଂ ଅସୁନ୍ଦର ହୋଇ ଉଠେ । ଉଦାହରଣ ଦେଇ ସିଏ ବେଳେ ବେଳେ ଉଚ୍ଚ ଶିକ୍ଷିତା ମିସେସ୍ ଖାଡ଼େଙ୍ଗାଙ୍କ ପାରିବାରିକ ଅଶାନ୍ତି କଥା ବିକଳାଙ୍ଗ କରି ବାଢ଼ିଥାନ୍ତି । ସେ ସବୁ ଶୁଣି ମନେହୁଏ ବାପା ବୋଧେ ଅଶିକ୍ଷିତ ପରିବାରର ପାରିବାରିକ ମନମାଳିନ୍ୟ ବା ଅଶାନ୍ତି ଡିଲେ ଅନୁଭବ କରିନାହାନ୍ତି...ତା ହୋଇଥିଲେ..

ମନର ସମ୍ମୁଖରେ ବାପା ଏବଂ ରତ୍ନା ଉଭୟେ ଠିଆ ହୁଅନ୍ତି...
ଜଣଙ୍କୁ ମୁଁ ଭକ୍ତିକରେ ଏବଂ ଜଣକୁ ମୁଁ ସ୍ନେହ କରେ...

ମୁଁ ଜୀବନଯାତ୍ରାର ଛକ ଉପରେ ଠିଆହୋଇ କେଉଁ ରାସ୍ତାରେ ଯେ ଯିବି ଠିକ୍ କରି ପାରେନି ... କିନ୍ତୁ ରତ୍ନାଙ୍କୁ ଅବହେଳା କରି—ସମାଜର ଉପହାସକୁ ଅଳଙ୍କାର କରି ଦାସତ୍ୱ ଅଭିନନ୍ଦନ କରିବି—ବୁକୁର କୋହ

ଅନେକ ଦୂର ମଢ଼ିଯାଇଛି—ସରଅମ୍ଭେର ଅଖିର ଲୁହ—ବାପାଙ୍କ ମନବୃତ୍ତି ମୋତେ କେନ୍ଦ୍ରକରି ମୋ ଗୃହମାଟେ ଯେଉଁ ବୃତ୍ତ ଅଙ୍କିଛି ସେଇ ବୃତ୍ତରେ ମୁଁ ସୀମିତ...ମୁଁ 'ଜଡ଼ ପ୍ରକୃତି ବାପାଙ୍କ ତୃପ୍ତି ଲାଗି ମାଟି କଣ୍ଢେଇ ସମ୍ଭବତ ମୋର ବର୍ତ୍ତାନ୍ତ କରିବା କର୍ତ୍ତବ୍ୟ ବୋଲି କହି ରାଜ ପଥରେ ପାଦ ଦେଲି...

ପଛରୁ ଶୁଣା ଯାଉଥିଲା—ବିକ୍ରାଙ୍କ କ'ଣ କହିବ... ?

ଦୁହେଁ ଗୋଟେ ମତେ ଗୃହିଁ ରହିଥାନ୍ତି—ନିରୋଳାରେ ଗୃଲିଥାଏ—ଆମ ବଂଶର ଆଭିଜାତ୍ୟ ଏବଂ ମୋର ଉଚ୍ଚ ଶିକ୍ଷା ଲାଗି ମୁଁ ଅନୁତାପ କରି ନିଜକୁ ଅଭିଶାପ ଦେଇ ଆଗେଇ ଗୃଲିଥାଏ—ଅଶ୍ରୁର ଝରଣା କ୍ରମେ ଚଞ୍ଚଳ ହୋଇ ଉଠିଥିଲା । ବିକ୍ରାଙ୍କ ଦହନ ମନ ମଧ୍ୟରେ ଭରିଥିଲା ଝଂକା । ପ୍ରତି ମୁହୂର୍ତ୍ତରେ ଆଖି ଆଗରେ ଠିଆ ହେଉଥିଲା...ମୂର୍ତ୍ତିବୀଙ୍କ ପାଳିତା କାଶ୍ମୀର କନ୍ୟା "ମାଟିର କଣ୍ଢେଇ"...

× × ×



ବହଳ ତମିସ୍ରା ଠେଲି ନିଜ କ୍ୱାର୍ଟରରେ ପ୍ରବେଶିଲି । ମାନସିକ ଦୌର୍ବଲ୍ୟ ମୋ ଶରୀରରେ କ୍ଳାନ୍ତି ଭରିଥିଲା, ଆଖିର ପତା ଭାରି ହୋଇ ଉଠିଲା ..ଜୀବନକୁ ମୁହୂର୍ତ୍ତେ ଉପ-ଭୋଗ ଲାଗି ଆଶ୍ରୟ ନେଲି ତନ୍ଦ୍ରାର...ତଥାପି ମୁକ୍ତି ନାହିଁ, ସମ୍ମୁଖରେ ସେଇ ଦୁଇଟି ଅଶ୍ରୁଳ ଆଖିର ମିନତି, ଆକୁଳି ପ୍ରଣମି ବିକ୍ରା ମୋ କକ୍ଷରେ ନିସ୍ପତ ଲାଗି-ମୋ ବୁକୁ ତଳେ ତାଙ୍କ ହୃଦୟର କାରୁଣ୍ୟ ଏବଂ ବିଷର୍ଣ୍ଣ ତନମାର ଦରଦ...ମାନସର ବିଶ୍ଳେଷ୍ଟୁ ଥିଲି ଶେଷ ନିଷ୍ପତ୍ତି...ହଠାତ୍ ବିନିଦ୍ର ହେଲି...ପ୍ରାଣ ତଳେ ମୋର ସୃଷ୍ଟିର କାମନା ଏବଂ ପିତୃ ଭକ୍ତି ପ୍ରକୋଷ୍ଠରେ ଏକାକୀ ମୁଁ—ବାତାୟନ ଦେଇ ଚକ୍ଷୁ ମୋର ଲମ୍ବି ଗଲା ଆକାଶ ଆଡ଼କୁ । ଦେଖିଲି ଅକସ୍ମାତ୍ କେ ଗୋଟାଏ ନକ୍ଷତ୍ର କକ୍ଷଚ୍ୟୁତ ହେଲା...ହସ୍ତ ତୋଳି ସ୍ରଷ୍ଟାଙ୍କୁ ପ୍ରଣାମ କଲି...ଏ ପୃଥିବୀ ବଂଶ ରକ୍ଷା...କହି ରୁହ






# ବନ୍ଧୁବର ବନ୍ଧୁରେ—

ଶ୍ରୀ ଅନନ୍ତ ପଟ୍ଟନାୟକ

ନିଜ ଗୃହପଟେ ଘୂରି ମୁଁ ଅଇଲି
　　　ଢାଏ ମୁଁ ନାଚିଲି, ଢାଏ ପଣାପାଣି ଢାଏ,
ଢାଏ ଅଛ କାହିଁ ?
　　　　　ପ୍ରୀତି-ପାନ୍ଥ ହୋ,
　　　　　ସ୍ମୃତି-ନାଟ୍ୟ ହୋ,
କି ଛନ୍ଦ କଥାରୁ ଦ'ପୋଷ ବାନ୍ଧୁଛ କଏ ?
ତୁମେ ସବୁ ସିନା ଦେଖଣାହାରି ହୋ,
　　　　　ଗୀତ-ଗ୍ରନ୍ଥ ହୋ—
ରୂପ ମୁହଁସବୁ ମୋ ଡାକଟିକେଟ ଛପା,
　　　　　ମେ' କଥା ସୁତର—
　　　　　ପେ ଜେକେବ୍ ଦେହ—
　　　　　ଦାହାର ତଟ ଣୋ ଥପା ।
ତୁମେ କି କୁହଁ ମୋ ଶିଳ୍ପ କେନାଲ ଖାଲ ?
ଛାଡ଼ ଛାଡ଼ ଗଲ୍ପ ପାଟପଟଣୀର
　　　　　　　　　ସ୍ୱପନ ଧଳବେ—

ତୁମ କାମନାର କୋଉକଲ ତୁମେ
ତୁମ ବାହାନାର
ଟିଲ ?

ତୁମେ କି ଭୁଲିଚ ତୁମ ଅନୁରାଗୀ
ତୁମରି ଲାଗି ମୁଁ
ପ୍ରାଣ-ମଣାମଣି
ଗଣେ-ଛଣାଛଣି
ଲଢ଼େ ?

ନିଜ ଗୃହପଟେ ଘୂରି ମୁଁ ଅଇଲି
ଧଏ ମୁଁ ନିଜକୁ ନିଜ ପଣାପାଣି ଧଏ
ନିଛଟେ ଅଭିସାରେ କେତେ ଭ୍ରମିମାର
ଭଗ୍ନ ଦୀପାଳି ଛଳେ,
କେତେ ଯାମିନୀର କେତେ ଦାରିକାର
ସୁର-ଶାରଙ୍କାର
ତୁମେ କି ଜାଣିଚ…
କୁହିମ ଛଳ ସୋହାଗେ ମାତି ମୁଁ
ମୁଁ ହିଁ ମୋ ଧୂପରେ ଜଳେ ?

ମନ-ଦେଉଳରେ ମୁଦ କା' ପଉଳା, ପଡ଼ୁ ରେ
ଦେହ-ଗାଉଆରେ ବୋଧି କା ସଡ଼ିଲା ସଡ଼ୁରେ
ଅରୂପ ରଙ୍ଗରେ ରୂପ କା' ଫୁଟିଲା. ଫୁଟୁ ରେ
ତୁମ ଶାଳବଣାବଳାପେ ବହନ୍ତି
ରେଖାଚିନାରର ବାଦାମ୍ ଟିକୁରେ
ମୁଁ ହିଁ କି ରହିନ ଗୃହିଁ ?

ନିଜ ଗୃହପଟେ ଘୂରି ମୁଁ ଅଇଲି
ତୁମେ ତ ଭୁଲିନ, ତୁମେ ଚହିଁନ,

ମୃତ ସମୀରଣେ ମରମ ତୁମେ କି,
କି ଯୁଗ ବିତଲା କାହିଁ ?

ଚମ ଦୁହିଁହେଲ, ଘୋଷର୍ ଘୋଷା ଏ,
ହାଡ଼ ମେଲ ମେଲା ଧନରେ
ସୁନା ପାହାଡ଼ରେ ରୂପେଲି ଝାଡ଼ରେ
କେଉଁ ରସିକାମା କିଙ୍କିଣୀ କଣି
ଅୟୁ କା'ହୋଇଚି ଷୀଣ ରେ ?

ଜୀଇଁବାର ଲାଗି ଯୋଜନା ନ କରୁ
ମରଣର ପାଶେ ବାଂଧା ପଡ଼ିଚି ମୁଇଁ କି ?
କିଏ ସେ ରମଣ, କିଏ ସେ ରମଣୀ ?
ମୁଁଇ କି ଖେଳୁନା କେଳଘର ଗଢ଼ ଭୁଲିଁ କି ?

ମୁଁ ଯେ ରଣରଣ ରଣପା' ଲଗାଇ
କେତେ-ଷଣ ଷଣ-ଅଟ୍ଟାଳେ ଜଗାଇ
କେତେ ଭାଲପଟ୍ଟୁଁ ସିନ୍ଦୁର ପୋଛୁ—
ଚନ୍ଦନ ବୋଳୁ—

ସୁରସ-ରସରେ—କଳାର କଳସୀ ପିଏ !
ମୁଁ ନୁହେଁ ମୋହର, ମୁଁ ନୁହେଁ କାହାର,
ମୋହର ପତାକା ପାଇଁ କି,
ଏକ ହାତେ ଯାହା ଦେଇଥାଏ ତାହା
ଆନ ହାତେ ନିଏ ନାହିଁକି ?

ମୁଇଁ ମୂଳାଧାର ଯନ୍ତ୍ର ବାଜଣାର
ସବୁ ଭଗବତୀ ଦେବୀ ମାଜଣାର,

ତୁମ ନିରୁପାଧି ସତ୍ତା ଗହଣେ—
ମତ୍ତ ଉପାଧି ବହେ !

ତୁମେ କି ଜାଣିଚ ?
ତୁମ ଧ୍ରୁପଦର ଧମନୀ ଓଁକାର

ଏ ଜଗ୍ ଯୁବର କେତେ ଯଉବନ ସାଏଁ ।
ତୁମେ ଟୋଇଥାଅ ଓଲଟ ପୁରୁଷ
ଓଲଟ ନାରୀ ହୋ
ନଈଁକି ବେଢରେ, ଜଡ଼ ଚେତନର, ଦୁଆରେ
ଘାରି ଗୋ
ପଦ୍ମ-ଅଧରର ସରର ମହିରେ
କେବେ ହଜାଯାଇ କେବେ ନ ହଜି ରେ
ନିଜ ନିଅଁ ଗାଡ଼େ ରଏଁ ମୁଁ ବାଳସୀ
ଏ ବାଳ-ବାଳସୀ ହୁଏଁ ।
କି ଛତ୍ରୁ କଥାର ପ୍ରୀତ-ପାଠୁଅ ହୋ
ପ୍ରୀତ ନାଠୁଅ ହୋ
ଅପୋଷ ବାତୁର କିଏ ?
ମୁଁ ବାଳ-ବାଳସୀ ହୁଏଁ ।
କହନ୍ତୁ କହନ୍ତି ଚାଏଁ !




# ମାୟାଜାଲ

ଶ୍ରୀମତୀ ଉଷାରାଣୀ ପଣ୍ଡା

କଟକ ସହରର ସେଇ ସେ ପୁରୁଣା ଗଳି । ରାସ୍ତା ଧାରର ନେଳି ନର୍ଦ୍ଦମାକୁ ଲାଗି ବିରାଟ ଲୌହ ଫାଟକ ; ବହୁ ଦାମର, ବହୁ ପୁରାତନ । ଖଣ୍ଡେ ଦୂର ଛାଡ଼ି ମୁଣ୍ଡ ଟେକି ଛିଡ଼ା ହୋଇଛି ତ୍ରିତଳ ପ୍ରାସାଦ । ସତେ ଯେପରି ଅଜା ସେ ନିର୍ଜୀବ, ନିସ୍ତେଜ, ମୂକ । ଇଟା ମାଟି, କାଠ ପଥର ସବୁ ସେଇମିତ ପଡ଼ି ରହିଛି । ନାହିଁ କଂରୁ ସେଠି ହୃତ୍‌ପିଣ୍ଡର ସ୍ପନ୍ଦନ କି ପ୍ରାଣର ସଂଚାର ।

ତଳ ମହଲର ଏକ ନିର୍ଜନ କୋଠରୀ । ଗୃହଅଡ଼େ ଯେପରି ରହିଛି ବିରାଟ ନିସ୍ତବ୍ଧତା । ବାଁ ହାତ ପାପୁଲିରେ ଗାଲଭରା ଦେଇ ଏକାକୀ ବସିଛନ୍ତି ଅନିରୁଦ୍ଧ ବାବୁ, ସହରର ପୁରୁଣା ନାମଜାଦା ଅଇନଜୀବୀ । ଶେଷ ଅବସ୍ଥାରେ ବାର୍ଦ୍ଧକ୍ୟର ଛାୟା । ମନକୁ ମନ କଣଗୁଡ଼ାଏ ଗୁଣୁ ଗୁଣୁ ହୋଇ ମଝିରେ ମଝିରେ ଖୁବ୍ ଜୋରରେ ହସି ଉଠୁଛନ୍ତି ସେ । ଅସ୍ତେ ପ୍ରସାରିତ ହୋଇ ଯାଉଛି ଅଖି ଦୁଇଟିର ଶିଥିଳ ପତା । ତାପରେ, ତାପରେ······ । ହଁ, ତାପରେ । ନିସ୍ପ୍ରଭ ଅଖି କୋଣରୁ ତାଙ୍କର ଧାର ଧାର ହୋଇ ପଡ଼ୁଛି ଅଜସ୍ର ଲୁହ ଧାର ; ବାଧାହୀନ, ଛନ୍ଦମୁକ୍ତ । ବାଷ୍ପରୁଦ୍ଧ କଣ୍ଠ କ୍ରମେ ଥରି ଥରି ଉଠୁଛି । କୋଠରୀ ଭିତରେହିଁ ମିଳେଇ ଯାଉଛି ତାଙ୍କର ଅନ୍ତରର ସମସ୍ତ ଆପତ୍ତି, ଅଭିଯୋଗ ।

ଭାବି ଚାଲିଛନ୍ତି ବୃଦ୍ଧ । ଅତୀତର ସେ କି ଭୟଙ୍କର ଅବିସ୍ମରଣୀୟ ଘଟଣା ! ମନେ ପଡ଼ିଲେ ଏବେ ବି ସ୍ତମ୍ଭିତ ଭୟରେ ଥରି ଉଠେ......... । ହତ୍ୟା ଅଭିଯୋଗ, ମାଲିକାନା ଦାବି, ଏଇପରି କେତେ କଣ । ଆଇନର ଦ୍ୱାହି ଦେଇ ସତକୁ ମିଛ, କଳାକୁ ଧଳା କରିବାକୁ ଯେ ହେବ ! ଏକ ଆଡ଼େ ବିବେକର ତୀବ୍ର ଦଂଶନ ଅନ୍ୟ ଆଡ଼େ ଭବିଷ୍ୟର କ୍ରୂର ଆହ୍ୱାନ । ସମ୍ମୁଖରେ ଜଟିଳ ସମସ୍ୟା । ସମାଧାନର ରାସ୍ତା ଖୋଜି ଖୋଜି, କେତେ ରାତି ବିତି ଯାଇଛି । ଆଖି କଷା ପଡ଼ିନି । ଭାବି ଭାବି ବିଗିଡ଼ି ଯାଇଛି ମୁଣ୍ଡ, କାହିଁକି ? କେଉଁ ଆଶାରେ ଏତେ ପରିଶ୍ରମ କରୁଥିଲେ ସତେ । ମାୟା ମରୀଚିକାର ପଛେ ପଛେ କାହା ପାଇଁ ପାଗଳ ପରି ଦଉଡ଼ିଥିଲେ ସେ ତେବେ ?

ହଁ, ମିନି ବୋଉ ; ଭାଗ୍ୟବତୀ ସେ । କାହିଁକି ବା ସେ ବଞ୍ଚି ରହିଥାନ୍ତା ଏ ବୟସରେ ଜଳି ପୋଡ଼ି ମରିବାକୁ । ମରି ଯାଇଛି ତ ସେ, ତରି ଯାଇଛି । ସେ ଯେ କନ୍ୟାଦାୟୀ, ଜନନୀ । ଆଖି ଆଗରେ କଣ ସେ ଦେଖି ପାରିଥାନ୍ତା ତାର ଏକମାତ୍ର କନ୍ୟାର ଏ ଅଧଃପତନ, ସହି ପାରିଥାନ୍ତା ସାଇ ପଡ଼ିଶା ; ଜ୍ଞାତି କୁଟୁମ୍ବଙ୍କର ଥଟ୍ଟା ପରିହାସ । ନା, ନା ! କେବେ ନୁହେଁ । ଚାଲି ଯାଇଛି ସେ, ଯାଉ । କିନ୍ତୁ ସେ ?......ହସି ଉଠିଲେ ବୃଦ୍ଧ । ବେଦନାର ଗୁରୁ ଆଘାତରେ ଆହତ ହେଲେ ସେ, ଓଦା ହୋଇ ଆସିଲା ତାଙ୍କର ଆଖିପତା । ଅତୀତ ସେ ତ ଅନାଗତ । କିନ୍ତୁ ବର୍ତ୍ତମାନ !! ସେ ଯେ ସତ୍ୟ ଅସହ୍ୟ ଅସରନ୍ତି । ଆଉ କିଛି ଭାବି ପାରିଲେନି ବୃଦ୍ଧ ।

ପର ମୁହୂର୍ତ୍ତରେ କିନ୍ତୁ ପୁଣି ଥରେ ଚମକି ଉଠିଲେ ଅନିରୁଦ୍ଧ ବାବୁ । ଏଁ ଏଁ କଣ ଗୁଡ଼ା ଏ ଭାବୁଛନ୍ତି ସେ ସତେ । ନିଜକୁ ଆଜି ସେ ଏତେ ଅସହାୟ ମନେ କରୁଛନ୍ତି କାହିଁକି ? କଣ ନାହିଁ ତାଙ୍କର ? ଦୀର୍ଘ ଜୀବନର ଅକ୍ଲାନ୍ତ ପରିଶ୍ରମ ଆଉ ଅଧ୍ୟବସାୟର ବିନିମୟରେ ପାଇ ପାରିଛନ୍ତି ସେ ଯଥେଷ୍ଟ ସମ୍ମାନ ଆଉ ସମ୍ପତ୍ତି । ତେବେ ଅଭାବ ଆଉ ତାଙ୍କର ରହିଲା କେଉଁଠି ? କାହିଁକି ଆଜି ସେ ଏତେ ବିବ୍ରତ ! ଏତେ ବିଚଳିତ ଆତ୍ମ ପ୍ରସାଦରେ ଫୁଲି ଫୁଲି ଉଠିଲେ ବୃଦ୍ଧ । ନିଜ ସିଦ୍ଧାନ୍ତରେ ପରିତୃପ୍ତ ହୋଇ ଅଟ୍ଟହାସ କରି ଉଠିଲେ ସେ ।

ବାହାରପଟୁ ଝଡ଼ ବେଗରେ ଦଉଡ଼ି ଆସିଲା ବେଣୁଧର, ବାବୁଙ୍କର ଅତି ପରିଚିତ ବିଶ୍ୱସ୍ତ ଭୃତ୍ୟ । ଧୀରେ ହାତ ଧରି ବାବୁଙ୍କୁ ତା'ର ଉଠାଇଲା ସେ । ଯନ୍ତ୍ରଚାଳିତ ପରି ବିଛଣାରେ ଆସି ପଡ଼ିଗଲେ ଅନିରୁଦ୍ଧ ବାବୁ । ସେତେବେଳକୁ ହଜି ହଜି ଆସିଥିଲା ତାଙ୍କର ଚେତନା । ମୁହଁରେ ପାଣି ସିଞ୍ଚି, ଧୀରେ ଧୀରେ ବିଞ୍ଚିଲା ବେଣୁଧର ।

ହଁ ବେଣୁଧର । ସେ ବି ଏକ ରହସ୍ୟମୟ ଜୀବନ । କେଉଁଠି ତାର ଜନ୍ମ କେଜାଣି ? ନେହୁରାପାଇଲା ଦିନୁ ଏଇ ବାବୁଙ୍କ ପାଖରେ ବଢ଼ିଆସିଛି ସେ । ଏଇଠି ତାର କଳା ଭଅଁରପରି ମୁଣ୍ଡର ବାଳତକ କହରା ଧରି ଆସିଲାଣି । ଆଗ ପାଟିରୁ ଦାନ୍ତ ଦୁଇଟା ବି ଝଡ଼ିପଡ଼ିଲାଣି କେଉଁଦିନୁ । ଦିନେ ହେଲେ ସେ ତାର ବାବୁ ଛଡ଼ା ଆଉ କାହାର କଥା ମନେ ପକାଇନି । କାହିଁକି ବା କାହା-କଥା ମନେ ପକାଇବ । କିଏ ବା ଅଛି ତାର ? ଏଇ ବାବୁହିଁ ତ ତାର ସବୁ । ସେଇ ତାର ବାପ, ସେଇ ତାର ମା । କାହିଁ କେଉଁଦିନୁ ନିଜର ବାପା ବୋଉ ତାର ମାଟିତଳେ ମାଟି ହୋଇ ଗଲେଣି । ଭୁଲ୍‌ରେ ବି ତାଙ୍କୁ ମନେ ପକେଇ-ବାକୁ ଚେଷ୍ଟା କରିନି ସେ କେବେ । ଆଉ, ଭଲ ଭଗାରି ! ଜଣକୁ ପୋଷିଲେ ମାଣେ ଖସେ । ଏତେଗୁଡ଼ାଏ ସମସ୍ତେ ତ ପରଜାନ୍ତା । ଜାଣିଶୁଣି ସେମାନେ ତା ବରଦାସ୍ତ କରନ୍ତେ କିପରି ? ସଂସାରଟା ଠକାର ପିଅରି । ସେଠି କଣ ଥାଏ ଆଉ ଜୀବନ ପ୍ରତି ମାୟା ମମତା, ସ୍ନେହ ଅନୁରାଗ । ଶୈଶବରୁ ଅନୁଭବ କରୁଥିଲା ସେ ଏ ନିର୍ଘାତ ସତ୍ୟ । ସେଇଥିପାଇଁ ଘରଛାଡ଼ି ପାଦ ବଢ଼ାଇଥିଲା ସେ ପଦାକୁ । ହାତ ଗୋଡ଼ ଥିଲା ଯାକେ ପେଟ ଗୁଣ୍ଡିକ କଣ ଆଉ ଅଚଳାଖିଆ ରହିଯାନ୍ତା ତାର ।

ଜୀବନର ଅସଜଡ଼ା ବାଟରେ ମାଡ଼ି ଗୁଲ୍ଲି ଗୁଲ୍ଲି ପହଞ୍ଚିଲେ ପାଇଥିଲା ସେ ତାର ଏଇ ଦେବ ପ୍ରତିମ ବାବୁଙ୍କର ଦର୍ଶନ । କି ଉଦାର ତାର ଏଇ ବାବୁ ସତେ ? ଗଭୀର କୃତଜ୍ଞତାରେ ନଇଁପଡ଼ିଲା ବେଣୁଧର । ତେବେ ନଇଁ ନଇଁ ଆସୁଥିଲା ସଂଜ । ଘର ଭିତରେ ବତୁଡ଼ି ହୋଇ ପଡ଼ିଥିଲା ଅସ୍ତ ରବିର ଲୋହିତ ଆଭା । ବାହାରକୁ ଦୃଷ୍ଟି ଫେରାଇଲା ସେ । ହଁ, ଘର ଆଗର ଏଇ ବଗିଚା ଅଗଣାରେ ନିତ ସଂଜରେ ପାଣିଢାଳିବାହିଁ ଥିଲା ତାର କାମ । କେତେ ନାଆଁକା ଫୁଲ ସତେ ଫୁଟି ନ ଥିଲା ସେତେବେଳେ । ଆଉ ଆଜି ...... ?

ଘୂରି ଘୂରି ଯାଇଛି ସମୟର ଚକ । ନାହିଁ ସେ ଅଯୋଧ୍ୟା, କି ନାହିଁ ସେ ରାମରାଜ୍ୟ । ଦୀର୍ଘ ନିଃଶ୍ୱାସ ଛାଡ଼ିଲା ବେଣୁଧର । କେତେବେଳୁ ଅନିରୁଦ୍ଧ ବାବୁଙ୍କ ଆଖିରେ ଲାଖିଯାଇଛି ଘୁମନିଦ । ଶୋଇଛନ୍ତି ସେ । ନିଶ୍ଚିନ୍ତରେ ଶୋଇଥାନ୍ତୁ । ଗୋଡ଼ତଳେ ବସି ଆସ୍ତେ ଦେହରେ ହାତ ବୁଲାଉଛି ବେଣୁଧର । ଆଖି ଆଗରେ ତାର ନାଚି ନାଚି ଯାଉଛି ବାବୁଙ୍କର ଗତଦିନର ଚେହେରା ।

ନିତ ଏଇମିତି ସଂଜ ନଇଁ ଆସିଲାବେଳେ ଦାଣ୍ଡ ବାରଣ୍ଡାରେ ଜଗି ବସିଥାଏ ସେ । ହର୍ଣ୍ଣ ଦେଇ ଦେଇ କଳା ମୋଟର ଗାଡ଼ିଟା ଯେତେବେଳେ ଆସି ଦୁଆର ମୁହଁରେ ସାଇଁକିନା ଅଟକିଯାଏ, ତରବର ହୋଇ ଦଉଡ଼ିଯାଏ ସେ

ଅଗକୁ । ବଳିପଣ୍ଡ ମୋଟର ଗେଟ୍ଟାକୁ ଖୋଲି ଧରେ । ବାବୁ ତାର ଚୁରୁଟ୍ ଟାଣି ଟାଣି ଓହ୍ଲାଇ ଆସନ୍ତି । ପଛେ ପଛେ ସେ ଘୁରିଏ ଉଆଁରେ ନଥି ପାଙ୍କ ପାହାଚ ଉପରକୁ ଉଠେ । ବୈଠକଘର ଟେବୁଲ୍ ଉପରେ ଆଗରୁ ସଜେଇ ରଖିଥାଏ ସେ ଫୁଲଦାନୀ । ବାବୁ ଯେତେବେଳେ ତାର ଫୁଲଟିଏ ସେଠୁ ନାକ ପାଖକୁ ଉଠାଇ ନିଅନ୍ତି, କୃତଜ୍ଞତାରେ ଭରିଯାଏ ତା'ର ଅନ୍ତର । ମନେ ମନେ ଉଲସି ଉଠେ ସେ । କିନ୍ତୁ ଆଜି······?

କାହିଁ ସେ ଦିନ । କୁଆଡ଼େ ହଜିଗଲା ସେ ଦିନଗୁଡ଼ିକ ସବୁ ? ସେହି ଘର, ସେହି ଦୁଆର, ସେହିମିତ ପଡ଼ି ରହିଛି ସମୟର ବାତ୍ୟାରେ କିନ୍ତୁ ଜୀବନ ହୋଇଛି ଛିନ୍ନଭିନ୍ନ, ଖଣ୍ଡବିଖଣ୍ଡ । ବାବୁଆଣୀ କେଉଁଦିନୁ ମାଟି ଧରିନେଲେଣି । ଏବେବି ଜଳ ଜଳ କରି ଆଖିଆଗରେ ଦିଶିଯାଉଛି ତାଙ୍କର ଗୋରା ତକ୍ ତକ୍ ମୁହଁ ଖଣ୍ଡି, ଆଉ ସୀମନ୍ତର ସରୁ ସିନ୍ଦୁର ଗାର । କାନରେ ଏବେ ବି ବାଜି ଯାଉଛି ତାଙ୍କର ତା ପ୍ରତି ଦେଇ ଶେଷବାଣୀ—"ମିନା ତୋତେ ଲଟିଲରେ ଦେଣୁ ।"



ମିନା ! କାହିଁ ତାଙ୍କର ମିନତ ସବୁ ? ସେ ଦିନର ମିନା, ହିଁ ହିଁ ସେନତ ଆଜି ଉଛିଣ୍ଣିଯିବା ହେବ କିନ୍ତୁ ସମ୍ଭ୍ରାନ୍ତ ପରିବାରର ମାନ ସମ୍ମାନ ଅଭି ଖାନଦାନୀ ଉପରେ ପଦାଘାତ କରି ମାନିଛି ସେ ଆଜି କୁଳବଧୂ । ନିଜେ

ନିଜେ ବାଛି ନେଇଛନ୍ତି ସେ ତାର ଜୀବନର ଗତି । ଯୌବନର ପୁଷ୍ପ ପିଢ ମାଡାଳ ହୋଇଛନ୍ତି ସେ ବାପା ବୋଉଙ୍କ ପ୍ରତ୍ୟାଖ୍ୟାନ କରିଣ । ଭୁକ୍ଷେମ ବି ଭରିନ ତାଙ୍କୁ, ଭୁଲି ଯାଇଛନ୍ତି ସେ, ତାର ଜାତି କୁଳ, ବଂଶ ମର୍ଯ୍ୟାଦା ଯନ୍ତ ଆତ୍ମ ସମ୍ମାନ । ଅର୍ଥ ଅଗଣ୍ଡ ବନ୍ଧୁତ ଦୂରକୁ ସେ ଗୁଲି ଦାଉଛନ୍ତି ଆଜ । ଦୀର୍ଘ ଦିନର ମାୟା ମମତା ଆଉ ସ୍ନେହର ବନ୍ଧନକୁ ଏତେ ସହଜରେ ଛିନ୍ନ କରି ପାରନ୍ତେ ସେ କିପରି ? ଶେଷରେ ମୃଣି ···... । କେମ ଶସ୍ତ୍ରାଘାତ ହୋଇ ଅସିଲ ଦେଖି ଘରର ଅର୍ଥ ଦୁଇଟି । ହଁ, କିପରି ଏ ବୃଦ୍ଧ ପିତା—ପ୍ରତି ତାର ଏତେ ନିର୍ମ୍ମମ— ଏତେ ନିଦାରୁଣ ହୋଇ ପାରିଲ ସେ ? ନାକରୁ ଶ୍ୱାସ ଚଢ ଯାଉଛନ୍ତି ଦେଖୁଥିଲ । ଅର୍ଥ ମଧ୍ୟ ତାର ଛଳ ଛଳେଇ ଅସିଲ । ଜାଳ ଜାଳିଅ ଅର୍ଥରେ ଗୁହିଁ ରହିଲ ସେ ତାର ବାପ୍ପର ମୁହଁକୁ ।

ହଁ, ଏଇ ବାପ୍ପ ତାର । କଣ ଥିଲେ ଅଉ କଣ ହେଲେଣି ଆଜି । ଅର୍ଦ୍ଧ ବୟସରେ ଜଗର ସ୍ପର୍ଶ । ଚିନ୍ତା ! ଅସରନ୍ତି ଚିନ୍ତା !! ସେ ଯେ ଜରାଠାରୁ ଅଧିକ ମାରାତ୍ମକ, ଅଧିକ ଭୟଙ୍କର । ଗୁହ୍ନିଁ ଗୁହ୍ନିଁ ଯେ ଜ୍ୱାଅନ୍ତାରେ ଜାଳି ପୋଡି ମଣିଷକୁ ପାଉଁଶ କରିଦେବ । ଜାଣି ଶୁଣି ସେ କେବେ ଚିନ୍ତା କରୁଛନ୍ତି ତାହାଙ୍କ ?

ଚିନ୍ତା ! ହଁ ହଁ ; ଚିନ୍ତା କରୁଛନ୍ତି ଅନିରୁଦ୍ଧ ବାପ୍ପ । ନ କରନ୍ତେ କିପରି ? କାହା ପାଇଁ ସେ ଚିନ୍ତା କରୁଛନ୍ତି କେବେ, କଣ ତାଙ୍କ ନିଜ ପାଇଁ ? ନା ନା । ଏତେ ସ୍ୱାର୍ଥପର ସେ କେବେ ହୋଇ ନ ପାରନ୍ତି । ମିନତି— ଏକମାତ୍ର ଆଦରର କନ୍ୟା ତାଙ୍କର । ତାଙ୍କରି ଲାଲ ରକ୍ତ ଯେ ପ୍ରବାହିତ ହେଉଛି ତାର ପ୍ରତି ଶିରାରେ । ଜୀବନରେ ବହୁ ଅଶା କରିଥିଲେ ସେ । ଭାବିଥିଲେ ମିନତି ହେବ ତାଙ୍କର ସୁଯୋଗ୍ୟା ଦାୟାଦ । ଉପଯୁକ୍ତ ପାତ୍ର ହାତରେ ତାକୁ ସମର୍ପି ଦେଇ ନିଶ୍ଚିନ୍ତ ହେବେ ସେ । ପରମ ତୃପ୍ତିରେ କଟିଯିବ ତାଙ୍କର ଜୀବନର ଶେଷାଙ୍କ । ଅବଶେଷରେ କେଉଁ ଏକ ଅଜ୍ଞାତ ମୁହୂର୍ତ୍ତରେ ହେବ ତାଙ୍କର ଜୀବନର ଶେଷ ଯବନିକା ମାତ୍ର । ଗଭୀର ଅଶ୍ରୁସ୍ତିରେ ମହାନିଦ୍ରାକୁ ବରି ନେବେ ସେ । କିନ୍ତୁ କାହିଁ ? ସେ ଅଶା ଯେ ତାଙ୍କର ମାଣି ଫୋଟିବା ପରି କାହିଁ କେଉଁଆଡ଼େ ମିଳାଇ ଗଲା । ମିନତି ବି ବୁଝି ପାରିଲା ନି ପିତାର ହୃଦୟ । ଅସ୍ଥ ବଳମାରେ ପାଗଳ ହେଲା ସେ । ଭୁଲିଗଲା ସେ ତାର ଅତୀତ, ବାପା ବୋଉ, ସବୁ କିଛି । ସେ ବିନା ନିଶ୍ଚିନ୍ତରେ ରହି ପାରିଲା କିନ୍ତୁ, ଅନିରୁଦ୍ଧ ବାପ୍ପ ! ସେ ଯେ ପିତା । ନିଜର ରକ୍ତରେ ଯେ ଗଢ଼ିଛନ୍ତି ତାକୁ । ସେ ବା ତାକୁ ଭୁଲିଯାଇ ନିଶ୍ଚିନ୍ତରେ ରହିବାନ୍ତି କିପରି ?-

ମନେ ମନେ କେତେ କଣ ଭାବି ଭାବି ଗୁନି ହେଲ ଡବଣ୍ଣ୍ଯବ । ତେବେ ବାବୁ କଣ ତାଙ୍କ ଏଇମିତ ଝୁରି ଝୁରି ଶେଷରେ .. ??? ଇଇଁ କଇଁ କାନ୍ଦିଉଠିଲ ବେଣୁ । ହଠାତ୍ ଚମକି ଉଠିଲେ ଅନିରୁଦ୍ଧ ବାବୁ । ସ୍ୱପ୍ନ ଦେଖୁଥିଲେ କି କଣ ! ଅଗକୁ ହାତ ବଢ଼ାଇ ଖୁବ୍ ଜୋରରେ ଡାକି ଉଠିଲେ—"ମିନା ! ମିନା !!" ଆଖିରେ ତାରକା ସ୍ଥିର । "ଏଇ, ଯେ ମିନା ତାଙ୍କର ଅଖି ଆଗରୁ ଧୀରେ ଧୀରେ ଅପସରି ଯାଉଛି ଦୂରକୁ, ବହୁ ଦୂରକୁ 'ପଛକୁ ବି ଫେରି ଗୃହୁଁ ନି ଥରେ । ଏଁ ଏଁ ସେ କଣ ତେବେ କେହି ନୁହନ୍ତି ତାର ? କ୍ରମେ ସରୁ ହୋଇ ଆସୁଥିଲ ତାଙ୍କର କଣ୍ଠର ସ୍ୱର ।



ସଂଜ ବେଳଟାରେ ଦାଣ୍ଡ ଦୁଆରେ ଦାଣଢାଟିଏ କାଠି ଠକ୍ ଠକ୍ କରି ଉଚ୍ଚ ସ୍ୱରରେ ଗାଇ ଉଠିଲ ଜଣେ ଭିକ୍ଷାର୍ଥୀ—

"ମିଛ ମାୟା ସଂସାର
କେହି ନୁହେଁ କାହାର"

ବୃଦ୍ଧ ଅନିରୁଦ୍ଧ ବାବୁଙ୍କ କାନରେ ଭିକ୍ଷୁର ଏଇ ପଦ କେଇଟି ବାଜିଗଲ ପରି ।

ହଁ ହଁ ଠିକ୍ କହୁଛ ବାବା । ସତ, ସତ । କିଏ କାହାର ? ମମତାର ମାୟା-ଜାଲରେ ଛନ୍ଦି ହୋଇ ମଣିଷ ଖାଲି ଧନ୍ଦି ହୁଏ ସିନା ।" କ୍ରମେ କଣ୍ଠ ତାଙ୍କର ବାଷ୍ପରୁଦ୍ଧ ହୋଇ ଅସୁଥିଲ । ଅଖିରେ ଲହଡ଼ି ଭାଙ୍ଗୁଥିଲ ଢ଼ଳୁଢ଼ଳୁ ଲୁହ । ଭିକୁଅଙ୍କ ପରି ଅଁ ଟା କରି ବାବୁଙ୍କ ମୁହଁକୁ ତାଇ ଗୃହିଁ ରହିଥିଲ ବେଣୁଧର ।



★ ★ ★ ★ ★

# ଭୟ

★ ★ ★ ★ ★

ଅଧ୍ୟାପକ ଗୋପାଳଚନ୍ଦ୍ର ମିଶ୍ର

ଚୁପି ଚୁପି ତୁମେ ରହିଅଛ ପରା ସବୁ ଦିନେ
ନଶ୍ୱର ଖଣ୍ଡ ଜୀବନରେ,
ପଶୁ ପକ୍ଷୀ ଆଦି ମଣିଷ ସ୍ୱଜନ ସମ୍ମାରେ
ଦେଖା ଦେଇଥାଅ ଅରେ ଅଡଢ ।
ଲଭି ନବା ଷଣ ଜୀବନ ଖପଣି ପନ୍ଥାରେ
ତୁମେ ଦେଖାଦିଅ ଇଙ୍ଗିତେ
ତୁମେ ଦେଖା ଦିଅ ଶାନ୍ତ ଝଡ଼ ସମ ଝଙ୍କାରେ
କରୁଣ ପ୍ରାଣର ସଙ୍ଗୀତେ ।
ତୁମେ କେତେ ବଡ଼ କେତେ ସୁବିଶାଳ ଗମ୍ଭୀର
ମନ ହାଣି ରୂପ ଅଙ୍କଣ
ସବୁର ଜୀବନ ଯାତ୍ରାପଥର ବନ୍ଦିତ
ତୁମ ଅନ୍ତର ଶଂଖ ନିର୍ଘୋଷ—
ପ୍ରୌଢ଼ର ପ୍ରାଣ ତରୁଣର ପ୍ରାଣ ମନ୍ଥିତ
ଶିଶୁ ଜନମନ କଂପିତ ।
ତୁମଲାଗି 'ଭୟ' ଦେବତାର ଭୟ ସନ୍ତତ
ଶତ ସ୍ୱାର୍ଥ ପ୍ରାଣ ଶଙ୍କିତ ।
ପର ଧନ ଲୁଟି ଚୋରର କରିବାର ସନ୍ତାପ
କୁପଥ ଗାମୀର ସାନ୍ତ୍ୱନା
ତୁମେ ଭୟ ଅହା ! ବକ୍ତ୍ରରୁ ବଳି ହୁଙ୍କାର
କବି କରେ ତୁମ ବନ୍ଦନା—
ଯୁଗେ ଯୁଗେ ତୁମେ କରିଛ ଶାସନ ସଂସାର
ଯୁଗେ ଯୁଗେ କର ସଂହାର
ତୁମେ ଜୟ ବିଜୟର ପରାଜୟ ଗୀତି ଉଚ୍ଛ୍ୱାସ
ତୁମେ ଲଳିମୟ ଝଙ୍କାର
ପ୍ରତି ଯୁଗେ ତୁମେ ପ୍ରତି ସଂସ୍କାରେ ଜାଗ୍ରତ
ତୁମେ ଦେଇଥାଅ ଇଙ୍ଗିତ ।
ଜୀବନର ସେତୁ ଦଳ ଭେଳ ନଷ୍ଟପତ୍ର
ତୁମେ କରୁଥାଅ ନଷ୍ଟିତ ।






# —ଅଭିଳାଷ—



**ଶ୍ରୀ ଗୋପାଳ ଛୋଟରାୟ୍**



### ଚରିତ୍ର ପରିଚୟ

ଦାମ—ମଧ୍ୟ ବୟସ୍କ ଗରିବ କୃଷକ
ନେଳ—ତା'ର ସ୍ତ୍ରୀ
କୁଣିଆ—ତା'ର ଦଶ ବାର ବର୍ଷର ପୁଅ
ଫୁଲ—ଦାମର ବଡ଼ ବଧୂ
ମହାଜନ ଓ ଗୁମାସ୍ତା ।

(ପ୍ରଥମ ଦୃଶ୍ୟ । ଗାଁର ଏକ ସାଧାରଣ କୃଷକ ଦାମ ସ୍ୱାଇଁର ଝୁଁଷ ଖଂଲଟ୍ଟ ଗୁହାଳ । ଦୃଶ୍ୟ ଆରମ୍ଭରେ ଦେଖାଗଲା ଗୁହାଳ ଦୁଆର ମୁହଁରେ ଠିଆ ହୋଇଛି ନେଳ ।)

ନେଳ—କୁଆଡ଼େ ଗଲଣି ? ଶୁଣୁଛ ! ଗୋଠରୁ ଗାଈ ଅଇଲେଣି ଯେ ।

ଦାମ—ଗାଈ ଅଇଲେଣି ? ଗୁହାଳ କବାଟ ମେଲା ଅଛିଟି ?

ନେଳ—କବାଟ ମେଲା ହୋଇଛି ସେ···ତେବେ ଠିକାଏ ବନ୍ଦ କରିଦେଇଛ ଆସ । ଧଳକଣ୍ଢି ବାଛୁରି ଜଠଉଥିଲା ସେ ମୋ ଖାଇବ ହାଉଚି ଅଁଳା ହେଉଛି !

ଦାମ—ହଉ ଗୁଲ ଗୁଲ ।...ହଁ, ବାଁ ହାତରେ ଟିକିଏ ଉବରଟା ଦେଖେଇବଟି ମାଣ୍ଡୁ ଅଢାବ ପାଉ ଅଇଲାଣି—ସେ କାଳାକାନଟା ଯେମିତ ଗରଙ୍କ ନା, ଲୁଅଡ଼େ ପୁଣି ଖପେ ଗୁଲଯିବ ।

ନେତ—ଗାକୁ ଅଗେ ବାନ୍ଧ ।

ଦାମ—ହିଁ, ବାନ୍ଧୁଚ । ଦେଖୁଚ ଫୁଲ ବୋଉ, କାଲୀ ଅଜ କୋଉଠୁ ପେଟେ ଦାଡେଇ ଦେଇ ଅସିଚ । ଟିଙ୍କ ମେନ୍ତେ ପେଟ ଫୁଲ୍‌ଚ । ମଲ, ମଲ, ଘୁଅ୍ ତେଣିକି । ତୁ କ'ଣ ଏକା ବନ୍ଧାହବୁ—ଅଜ କେହ୍ନ ବନ୍ଧା ହେବେନ ? ପେଟେଚ ଠୁଙ୍କିଚୁ...ଗୁହାଳରେ ପଶୁ ମଶୁ ପୁଣି ସଙ୍ଗାକୁ ମୁହଁ ବଢ଼ଉଚୁ କାହିଁକି ?

ନେତ—ହେଇ ଦେଖିଲ, ଗୁନ୍ଦ ପେଟ ଅଜା କେମିତ ଖଙ୍କା ପଡ଼ଚ—ଛୁଞ୍ଚି ମାରିଦେଲେ ଫୁଟି ଯିବ ।



ଦାମ—ସେଇଟା ସେମିତ ମୁହଁଗୋରଣୀଟାଏ । ପାଟି ଅଗରେ ନ ଥୋଇଲେ ତା' ପାଟିକି କାଣ୍ଡୁ ଯିବ ନାହିଁ ।......ତେବେଁକ ପୁଣି ଗାଁ ଗୋଟିଅ ଗାଈ ଖାଲି ନାକୁ ଫିଟନ୍ତି । ଶଏ କ ଦେଢ଼'ଶ ଗାଈ ମେଳରେ କାଏ କ'ଣ ଚରିବ । ଏ ସାଲଟା ଏମିତ ଯାଉ, ଅଇଦାକୁ ଆମେ ଅମ ନିଜର ଗୋଟିଏ ଗୁଙ୍କରଅ ପିଲ ରଖିବା ।

ନେତ—ଠାକୁରେ ଜାଣନ୍ତି । ବଣିଅ ପୁଅ ବାହାଘର ଅଷ୍ଟମଙ୍ଗଳା ବାସି ବଦେଶ କଲ । ସେ ରୋଜଗାର କରିବ, ତେମେ ଘର ବାନ୍ଧିବ, ଗୁଙ୍କରଅ ରଖିବ... ।

ଦାମ—ତୁ ଦେଖୁଥା ନେତ ସବୁ ହୋଇଯିବ । ଗୃହ, ଢାଳୀ ଧହେଇଁ ଅଇଦାକୁ ଜନମ କରବେ—ଫଗୁଣ ମାସରେ ବଣିଆ ଶଶୁର ଘରୁ ତା’ ଯୌତୁକ ଗାଈ, ବାଛୁରୀ ଅସିବେ···ଅଜ ଅମ ବଉଳାଟ ପୁଣି ଅଛୁ···ଅରେ ! ବଉଳା କାଇଁଗଲା ବଉଳା ·····

ନେଢ—ବଉଳାକୁ ବାନ୍ଧିନ ?

ଦାମ—କାଇଁ ! ବଉଳାଟ ନାଇଁ ଏଟି ? ଗାଈଅଳ ଅଜ କୋଉଠି ଛାଡ଼ି ଅଇଲ କି ?

ନେଢ—ମୁଁ ଦେଖିଚ ବଉଳା ପାହାଡ ଉପରକୁ ଉଠେଲା ।

ଦାମ—ଅଜ ଗଲା କୁଆଡ଼େ ?

ନେତ—( ବଡ଼ ପାଟିରେ ) ଅଲ୍ଲେ ବୋହୂ·· ବୋହୂମ ·· ଦେଖିଲୁ ମା··· ବଉଳା ଖଞ୍ଜା ଭିତରେ ଅଛିକି ?

ଦାମ—ଅଛୁ ?

ନେତ—କେଜାଣି । ଏଇ ବୋହୂ କ’ଣ ଏଣିକି ଅଇଲଣି ! କ’ଣ ଲୋ ମା, ବଉଳା କାଇଁ ?



ଫୁଲ—ହେଇତ ବୋଉ ! ବଉଳା ଅଜ ଏଣିକି ଗୁହାଳେ ବନ୍ଧାହବ ନାଇଁ ।

ନେଢ—କାହିଁକି ଲୋ ମା ?

ଫୁଲ—କୃଷ୍ଣ କ’ଣ ତାକୁ ପାଖରୁ ଛାଡ଼ିବେ ଯେ ସେ ଗୁହାଳେ ବନ୍ଧାହବ ?

ଦାମ—କ’ଣ ହେଲା ? କୁଶିଅ ବଉଳାକୁ ପାଖରୁ ଛାଡ଼ୁ ନାଇଁ ।

ନେଢ—ମଲା ! ତେମେ କ’ଣ ଜାଣିନ ? କୁଶିଅ ‘ମୋ ଦାମୁର’ ‘ମୋ ଦାମୁର’ ବୋଲି ସବୁବେଳେ ବଉଳା ପଛରେ ଦଉଡୁଥାଏ ।

ଦାମ—ବଜଲା ଏବେ କାହିଁ ?

ଫୁଲ—ବ୍ୱେଷଘର ପିଣ୍ଡାରେ କୁଷ୍ମାଂ ବସି ମୁଢ଼ି ଖାଉଚନ୍ତି, ଅଉ ପୋଷ ପୋଷ କରି ବଜଲାକୁ ଖୁଆଉଚନ୍ତି । ମୁଁ ବଜଲାକୁ ଯେତେ ଡାକିଲି, ତାଙ୍କୁ ଛାଡ଼ି ଅଇଲା ନାହିଁ ।

ଦାମ—(ହସି ହସି) ଓ୍, ଏଇଆ !

ନେତ—ହଉ ତେବେ ଗୁହାଳ କବାଟ ଦେଇଅସ···ସିଏ ବଜଲାକୁ ଖୁଆଉଚି । ସେଇ କୁଶ ଅଣି ବାନ୍ଧିବ, ତେମେ ଅସ ।

(ଦୁହିଁଙ୍କର ପ୍ରସ୍ଥାନ ।ଟିକିଏ ପରେ ବଜଲାକୁ ନେଇ ଅସିଲା କୁଶିଅ)

କୁଶିଅ—ବଜଲା ! ବଜଲାରେ! କ'ଣ-କ'ଣ-କ'ଣ କାର୍ତ୍ତିକ ଦେବଟାକୁ ଅଣି ମୋ' ଦେହରେ ଘଷୁଚୁ! ଅଉ ମୋଟେ···ମୋଟେ···ମୁଢ଼ି ଦେବନି । ଏତେ ଡାକିଲିଣି ତୁ ଓ୍, କରୁନୁ···ଅଉ ମୁଢ଼ି ଦେବ—! ଗୋଟାଏ ବି ଦେବନି !! ନା-ନା-ନା, ତୁ ଯେତେ ଲୁଳେଇ ପାଳେଇ ହେଲେ କ'ଣ ହବ ? ମୋ' ଡାକର ଆଗେ 'ଓ୍' କର ତେବେ ଯାଇ ମୁଢ଼ି ଦେବ । ବଜଲା-ବଜଲା ରେ···ବଜଲା···ହଁ·· ଏଇଯେ ମୋ' ସୁନା ବଜଲା ? ମୋ' ଡାକ ମାନି ମତେ 'ଓ୍' କରୁଚ । ନେ, ଅଉତ ନାହିଁ···ଏଇ ପୋଷକ ଅଚ୍ଛି···ଏଇତକ ଖାଇଦେ । ଅରେ-ଅରେ-ଅରେ-ମୁଢ଼ି ଖାଇବୁ ବୋଲି ମୋ' ହାତକୁ ଖାଇଦବୁ ଦୁଷ୍ଟ !!···ଏ···ଏ···ଏ କୁଆଡ଼େ ଯାଉଚୁ । ଏଇଠି ମୁଢ଼ିତକ ପାକୁଳି କର ଯା···ତେଣେ ବୋଉ ଦେଖିବ । ଭାତ ଖାଇ ମୁଢ଼ି ଖାଇଲେ ପେଟ କ'ଣ ହବ ବୋଲି ମତେ ମୁଢ଼ି ଦଉ ନ ଥିଲା । କେତେ କହି ବୋଲି ଅଣ୍ଟିଏ ମୁଢ଼ି ଅଣିଥିଲି !·· ଖାସ୍ ତୋ'ରି ପାଇଁ··· । କହିଲୁରେ ବଜଲା କେତେ ସୁନ୍ଦର ଜକ୍ମମ ଜକ୍ମମ ମୁଢ଼ି ହେଇଚ...           (ନେତ ଅସିଲା)

ନେତ—ନାଜମାଡ଼ୁନାହିଁ···ଅଣ୍ଟିଏ ମୁଢ଼ି ଦାମୁରଟାକୁ ଖୁଆଇ ତାକୁ ପୁଣି ଗେଲି ହଉଚ ।

କୁଶିଅ—କିଏ ? ବୋଉ ?

ନେତ—ଏଇଥିପାଇଁ ଅଜ ମୁଁ ଦ'ସେର ଗୁଜଳ ମୁଢ଼ି ଭାଜଥେଲି···

କୁଶିଅ—ତୁ କ'ଣ ଜାଣିନୁ ବୋଉ, ବଜଲାକୁ ନ ଦେଲେ ମୋ' ପାଟିକୁ କିଛି ରୁଚେ ନାହିଁ ।

ନେତ—ହଁ ହଁ, ମୁଁ ସବୁ ଜାଣିଚ···ମୁଢ଼ି ପେଟେ ତ ତାକୁ ଖୁଆଇଲୁଣି ଯା' ତାକୁ ଗୁହାଳରେ ବାନ୍ଧି ଦେଇଆ !

କୁଣିଅ—ହଁ, ତୁ ଯା ମୁଁ ଛାଲୁ ବାନ୍ଧିବି ।

ନେତ—ଯାଉନ୍ତୁ, ଡାମ୍ଫେଟାକୁ କୁଣ୍ଢେଇ କରି ବସିଚୁ କାହିଁକି ?

କୁଣିଅ—ଯିବୁରେ ବଉଳା, ବନ୍ଧାହବୁ ?

ନେତ—ମୁଁ ଯିବି କୁଆଡ଼େ ଲୋ ମା, ବାଛୁରିଟାକୁ ପୁଣି ପଚରା ହଉଚି, ସେ ଯିବ କି ନାହିଁ ? ସତେ ଯେମିତି ସିଏ ଯା' ସାନଭାଇ, ଯା କଥାମାନି ଚଳୁଚି !!

କୁଣିଅ—ଚଳୁଚିତ ! ମୋର ଗୋଟାଏ ସାନଭାଇ ଥିଲେ ମୋ' କଥା କ'ଣ ଏମିତି ମାନନ୍ତା ! ଏଇ ଦେଖନ୍ତୁ, ଏଇନେ ବନ୍ଧାହବାକୁ ଯିବନାଇଁ ବୋଲି ମୋ' ଛାଞ୍ଚଉପରେ ତା କମଳକୁ କେମିତି ନଦେ ଦେଇ ଠିଆ-ହେଲାଣି ।

ନେତ—ମୋର ବେଳନାହିଁ ତୋର ଏ ଅଲଣାକଥା ଶୁଣିବାକୁ—ତୁ ତୋ'ର କଣ କରୁଚୁ କରୁଥା ! ଆ'ଲୋ ବୋଢ଼ୁ, କୁଅନ୍ଥୁ ପାଣି ଦ'ଟା ଅଣିଚୁ ?

(ଫୁଲର ପ୍ରବେଶ)

ଫୁଲ—ଅଣିଲଣି ବୋଉ ।

ନେତ—ଟିକିଏ ଚୁଲିରୁ ଖଣ୍ଡେ ନାଗୁଆଣି ଅଣି ଚୁଲିଟା ନଗେଇ ଦେ ! ମୁଁ ତେଣେ ସାନ୍ଧୁ ଦ'ଟା ବନା ହୋଇନି ? (ପ୍ରସ୍ଥାନ)

କୁଣିଅ—ଦେଖିଲୁ ଟିରେ ବଉଳା, ତୋତେ ମୁଡ଼ି ଖୁଆଇଲି ବୋଲି ବୋଉ ମୋ' ଉପରକୁ କେତେ ଚିଡ଼ିଲା । ହେଲେ ତୁ ଯଦି ଏଣିକି ମୁଁ ଡାକିଲେ 'ହଁ' ନ କରିବୁ—ମୁଁ "ବଉଳା ଅ" ବୋଲି ଡାକି ଦେଲେ, ତୁ ଯଦି ଅଳଙ୍କା ନଈ ସେ ପାରିରୁ ଉଆଁ ମାରି ମୋ' ପାଖକୁ ଧପଟି ନ ଅସିବୁ, ଧା' ହେଲେ ଜାଣିଥା, ତୋତେ ଅଉ ମୁଡ଼ି ନା ଭୁଇ ଦୁବ କେଣ୍ଡାଏ ବି ଦେବନି !

ଫୁଲ—ସତେ ଯଦି ବଉଳା କଥା କହୁଥାନ୍ତା, କୃଷ୍ଣଂ ଅମର ଧନଗାଈ ମାନନ୍ତେ ନାଇଁ ।

କୁଣିଅ—ବୋଉ ପରି ତମକୁ ଚୁଲି ନଗେଇବାକୁ କହିଲା ନୁଅବୋ, ତେମେ—କାଇଁକି ଏଠିକି ଅଇଲ ?

ଫୁଲ—ନାଗୁଆଣିତ ଅଇଁଲଣି, କୁହୁଳା ପକେଇ ଦେଲେ ଅଗି ପିଛଳାକେ ଚୁଲି ଲଗିବ ।

କୁଣିଅ—ଯାଉନ, ଏଠି ଠିଆ ହେଲ କାହିଁକି ?

ଫୁଲ—ତେବେ କ'ଣ ଅଜା ଫଳା ବୋଲିବାକୁ ଯିବ ନାହିଁକି ? ଏଇଠି ବଉଳା ସାଙ୍ଗରେ ଖେଳି ହଉଥିବ । ତେଣେ ପରା ଗାଁ ଟୋକୀଙ୍କ ଅବଧାନେ ଆସିବେଣି ।

କୁଣିଆ—ସତେ ମ ନୂଆବୌ—ବଉଳାକୁ ଛାଡ଼ି ଦେଇ ମୋର ପାଠ ପଢ଼ିବାକୁ ମୋଟେ ମନ ହଉନାହିଁ ।

ଫୁଲ—କ'ଣ ହେଲା ? ବଉଳାକୁ ଛାଡ଼ି ତମେ ପାଠ ପଢ଼ିବାକୁ ଯିବନାହିଁ ? ଅବଧାନେ କହୁଥିଲେ, ତେମେ କୁଆଡ଼େ ଭାରି ଭଲ ପଢ଼ୁଚ...

କୁଣିଆ—ତେମେ ଜାଣିଚନା ନୂଆବୌ—କାଲି ଆମ ମାଷ୍ଟ୍ରେ ଆମକୁ କହିଲେ ମନରୁ ଯିଏ ଯାହା ପାରୁଚ ଗୋଟାଏ ଲେଖାଁ ଛବି ଆଙ୍କ ।

ଫୁଲ—ତେମେ କାହା ଛବି ଅଙ୍କିଲ ?

କୁଣିଆ—ମୁଁ ଗୋଟାଏ ବାଛୁରୀ ଛବି କଲି । ଆଉ ତେମେ ଜାଣିଚ ନୂଆବୌ—ସେଇଟା ଦେଖିବାକୁ ଠିକ୍ ଆମ ବଉଳା ପରି । ଛବିଟା ଏଡ଼େ ସୁନ୍ଦର ହୋଇଥିଲା ଯେ, ମାଷ୍ଟ୍ରେ ମୋ ସିଲଟ ଧରି ସବୁ ପିଲାଙ୍କୁ ଦେଖାଇଲେ...

ଫୁଲ—ଗାଁ ଦାଣ୍ଡରେ ଗଲା ଦୋଳକୁ ଯାହା ହେଉଥିଲା ତମର ମନେ ଅଛି ?

କୁଣିଆ—କୋଉ ସୁଆଙ୍ଗଟା କହୁଛ ?

ଫୁଲ—ଗୋପଲୀଳା ।

କୁଣିଆ—ବାଃ ରେ, ମନେ ନାହିଁ ପୁଣି, ସବୁ ସୁଆଙ୍ଗଠୁ ସେଇଟା ମୋର ଭଲ ମନେ ଅଛି ?

ଫୁଲ—ତମେ ଏ ବଉଳା ବାଛୁରୀକି ଯେମିତି ତମ ଜୀବନଠୁଁ ଅଧିକ କରି ରଖିଲଣି...ତମେ ଗୋପପୁରର ସେଇ ନନ୍ଦ ପୁଅ କ୍ରିଷ୍ଣ ହୋଇଥିଲେ ଭଲ ହୋଇଥାନ୍ତା । ତମ ନାଁ ପୁଣି, ଜାଣି କ୍ରିଷ୍ଣ ।

କୁଣିଆ—'କ୍ରିଷ୍ଣ' କଣ କହୁଚ ନୂଆବୌ । କହ କୃଷ୍ଣ !

ଫୁଲ—ହଁ ମ, ସେଇଆ ମୋ ପାଟିରେ ପଶୁନାହିଁ ।

କୁଣିଆ—ମୁଁ କୃଷ୍ଣ ହୋଇଥିଲେ ନୂଆବୌ, ସେ ଯାହା କୃଷ୍ଣଠୁଁ ଆହୁରି ବଢ଼ିଆ କରିଥାନ୍ତି । ସେ କୃଷ୍ଣ ପାଖିରେ ଗୋଟାଏ ଗାଈ ବାହାରି ଥିଲା ଯେ, ସେଇଟା ସତ ଗାଈ ନୁହେଁ—ମଣିଷଟାଏ—ମୁହଁରେ ଗୋଟା ମୁଖା ପୁରାଇ ଦେଇଥିଲା । ମୁଁ କୃଷ୍ଣ ହେଇଥିଲେ, ମୋ ସଙ୍ଗରେ ମୋ ବଉଳାକୁ ଧରି ମୁଁ ବାହାରିଥାନ୍ତି ।

ଫୁଲ—(ହସି ଉଠି) ଆଉ ବଉଳା ଯେମିତ ଉରକା—ମୁଣ୍ଡମାଳ ମଣିଷ ଦେଖି, ଯାହା କହୁଥାଇଛନ୍ତି ଶୁଣି ମାରନ୍ତା ଉଆଁ ଯେ, ନାଲଟ୍ ଭୁଇଁ, ହାତମାନଅ ଭୁଇଁ, ଓସ୍ତାଦ୍ଙ୍କ ମୁଣ୍ଡ ଫାଟି ଛତରଖାଳ ହେଇଯାନ୍ତା ।

କୁଶିଆ—ଆଉ ନା !! ମୁଁ ପାଖରେ ଥେଲେ ମୋ ବଉଳା ମୋତେ ଉଚକାବ ନାହିଁ । କି'ରେ ବଉଳା ! ଉରକିବୁ ? ବଉଳା··· ବଉଳା··· କି'ରେ 'ଓଁ' କହୁନୁ ବ··· ଉ··· ଳା··· ହେଲ ଦେଖ ନୂଆବୋଉ, ମୋ ବଉଳା କେମିତ ମୋ ଡାକ ଶୁଣି 'ଓଁ' କଲା ।

ଫୁଲ—ମୁଁ ଯାଏ ଲୋ ମା ! ରାତ ଅସି ଘଡ଼ଏ ହେଲଣି, ଉମର ଏ ଗୋପଲୀଳା ଦେଖୁଥେଲେ ତ ଏଇଠି ରାତ ପାହିଯିବ ।

କୁଶିଆ—ହେଇ ନୂଆବୋଉ, ଶୁଣ, ଶୁଣ—ମୁଁ ଯାଆରେ କୁଷ୍ଟ ହୋଇ ବାହାରଥିଲେ କି ଗୀତ ବୋଲୁଥାନ୍ତି ଜାଣ ?

ଫୁଲ—ତେବେ ଗୀତ ବୋଲୁଥାନ୍ତି ?

କୁଶିଆ—କାହିଁକି ? ମତେ କଣ ଗୀତ ବୋଲି ଆସେ ନାହିଁକି ?

ଦାମ—(ଭିତରୁ) କୁଶିଆ । ଅଜି ତୁ ଫଳା ବୋଲିବାକୁ ଯିବୁ ନାହିଁକି ? ଅବଧାନେ ଘର୍ ହୁଙ୍ଗୀକି ଆଇଲେଣି···ପିଲାଙ୍କ ପାଟି ଶୁଭିଲଣି ।

କୁଶିଆ—ଯାଉଚି ବାପା, ଯାଉଚି ।

ଫୁଲ—ହଁ ଯାଅ । ପାଠ ପଢ଼ିବ ଯାଅ । ଏ ଗାଈ ଗୋରୁ ବେବସା କଲେ କ'ଣ ପେଟ ପୂରିବ । ଦେଖୁଚ, ପର୍, ଭାଇ ଉମର ପାଠ ପଢ଼ିଲେ ନାହିଁ ବୋଲି କେମିତ କଲିକତାରେ ଯାଇ ଚଟକଲରେ ମୁଣ୍ଡ ଭାଙ୍ଗିଲେ ।

କୁଶିଆ—ମୁଁ ଯେତେ ପାଠ ପଢ଼ିଲେ ବି ବଉଳାକୁ ପାଖରୁ ଛାଡ଼ିବି ନାହିଁ ।

ଫୁଲ—ଛାଡ଼ିବ ନାହିଁ କ'ଣ ଗୋ । ଆଇନ୍ଦା ସାଲକୁ ବଉଳା ଦାନ୍ତିଲେ ତ ବିକା ହେଇ ପର ଘରକୁ ଯିବ ।

କୁଶିଆ—ହ୍ୟାତ୍ । ଅମଙ୍ଗୁଳିଆ । ବିକା ହବ କାହିଁକି । ତମେ କାହିଁକି ଏ ଅମଙ୍ଗୁଳିଆ କଥା ମୁହଁରେ ଧରୁଚ !

ଫୁଲ—ଧନ୍ୟ ତମ କଥା । ଦାମୁଡ଼ିଟା ବିକା ନ ହେଇ କଣ ହବ ?

କୁଶିଆ—ହଳ କରିବ, ବାପା କହୁଥେଲା, ଏ ବରଷଟା ଯାଇଲେ ଅମେ ଭାଗରେ ଚାଷ କରିବୁ । ଭାଇ ଟଙ୍କା ପଠେଇବ···ବଉଳା ସାଙ୍ଗକୁ ଗୋଟାଏ ଦାମୁଡ଼ି କିଣା ହେବ ।

ଫୁଲ—ହେଲା ଏତେ ଉମର କଥା । ତମେ ପାଠ ପଢ଼ିବ ନା ଚାଷବାସ ହଳ ନଙ୍ଗଳ କଥା ବୁଝିବ ?

କୁଣିଆ—ବୁଝିବ କଣ ନୂଆବୌ ! ମୁଁ ଯେତେ ପାଠ ପଢ଼ିଲେ ବି ନିଜେ ହଳ କରିବି ।

ଫୁଲ—(ହସି ହସି) ମୁଁ ପର ନାହଁଥାଏ ଟି । ମୋ ସୁନା ଭାଇଟା, ଏମିତ ପାଠଲାଗ ହେଲଣି ଯେ ନଙ୍ଗଳ କଣ୍ଢିରେ ହାତ ପକେଇବ ?

କୁଣିଆ—ଅନ୍ୟ ଲୋକେ କଣ ଭାବୁଛ, ମୋ ବଳଦଲାକୁ ନେଇ ଆଜ କିଏ ହଳ ଯୋଚିବ । ସେ ଯେଉଁ ହଳୁଆ ପାଇଛି, ସେଥିରେ ପୁଣି ମୋ ବଳଦ କାହା ହାତରୁ ପିଟା ଖାଇବ ?

ଫୁଲ—ଆଜ ତମେ ହଳ ଯୋଚିଲେ ?

କୁଣିଆ—ମୁଁ ତା ଦେହରେ ଟିପ ଛୁଇଁବି ନାହିଁ, ତାକୁ ମୋଟେ ପିଟିବି ନାହିଁ ।

ଫୁଲ—ନପିଟିଲେ ସେମିତ ମୋଟେ ଚାଲିବ ନାହିଁ, ଗଧଙ୍କ ପରି ଯେମନ୍ତ ଘୁଷୁରିବ !

କୁଣିଆ—ସତେ ! ମୋ ବଳଦ ଯେମିତ ଚଞ୍ଚଳିଆ !

ଫୁଲ—ଓ ! ଯେତେ ଚଞ୍ଚଳିଆ !!

କୁଣିଆ—ନୁହେଁ । ଦେଖିବ ଏଇନେ··· । ବଳଦ···

(ଝାଡ଼ିଦ ପୁଞ୍ଛଉଠିବା)

ଫୁଲ—ଇସେ ମୋ ବଳଦେ, ମଲି, ଏଣ୍ଡିକି ନବରଙ୍ଗିଆ ତମେ—ସତେ ଏଇନେ ମାଡ଼ ମାରିବ ଦେଇ ଥାନ୍ତା ।

କୁଣିଆ—(ହସୁଥାଏ) କହୁଥିଲ ପରା ଚଞ୍ଚଳିଆ ନୁହେଁ ? ଦେଖିଲ,···ଅରେ ବଳଦ ଅ···ଉଠେ ଗୁହାଳ ବାନ୍ଧ ମୁଁ ଟୁଙ୍ଗୀକି ଯିବି ।···ଅ···ଅ ।

## ୨ୟ ଦୃଶ୍ୟ

(ଅଳ୍ପଦିନ ପରର ଘଟଣା । ଦାମସ୍ୱାଇଁର ଘର ସମ୍ମୁଖ ସ୍ଥାନ । ଆସିଲି ମହାଜନଙ୍କ ଗୁମାସ୍ତା)

ଗୁମାସ୍ତା—ସୋଇଁପୁଅ ଘରେ ଅଛ···ସୋଇଁପୁଅ··· ଦାମ ସୋଇଁ ଘରେ ଅଛ ?

ଦାମ—କିଏ ?···ଅରେ-ଅରେ-ଅରେ ଗୁମାସ୍ତାଏ । ଇଏ କାହୁଁ ଅଇଲ ମେନ୍ତେ ଦଣ୍ଡ ପହରରେ ଠିଆହୋଇ ଡାକୁଥିଲ କାହିଁକି ?···ତମକୁ କଣ ମୋ ଘର ମନା ।···ଅରେ କୁଣିଆ ! ସକପଟା ଆଣିବୁଟି ।···ଏଁ, ଏଲଠି ଅଣ୍ଡୁତ । ବସ, ଗୁମାସ୍ତାଏ, ବସ ।

ଗୁମାସ୍ତା—ନାହିଁ ହେ ସୋଇଁପୁଅ—ବସିବାକୁ ମତେ ବେଳ ନାହିଁ । ଯାଉଥିଲି ଏଇବାଟେ, କହିଲି ସୋଇଁଙ୍କ ଘରେ ଟିକିଏ ମୁହଁ ମାରି ଯାଏଁ ।

ଦାମ—ଭଲ କଲ ନା । ଏଇବାଟେ ଆମେ ଏମିତ ଏମିତ ଚାଲିଯାଇ ଥାନ୍ତ । ପାନଖିଆ ।

ଗୁମାସ୍ତା—ଓହୋ !! ତମକୁ ଆଜ ପାଶ ହବନାଇଁ ଦେଖୁଚ ଦାମସୋଇଁ । ତମ
ଘରେ ପଦ ଦେଲେ ଚର୍ଚ୍ଚାଚ ହେଲା ନ ଥାଏ ।

ଦାମ—ପାନ ଖଣ୍ଡିଟାରେ କି ଚର୍ଚ୍ଚା କରିବ ମୁଁ ଗୁମାସ୍ତାଏ ! ତମକୁ ଚର୍ଚ୍ଚା
କରିବାର ବଳ ମୋର କାହିଁ ?...

ଗୁମାସ୍ତା—ଅଜସବୁ ଖବର ଭଲତ । ପୁଅ ଟଙ୍କା ପଠଉଚ ତ ?

ଦାମ—ହଁ ପଠଉଚ, ମାସ ସାତୁଟା ବିଦେଶ କରି ନାଇଁ ମରେ ସେ ଯାହା
ହେଲଣି ...ତମେତ ଜାଣିଚ ସବୁ, ତମଲୁ କେଉଁକଥା ଅଛପା ।

ଗୁମାସ୍ତା—ଜାଣିଚ ସୋଲିପୁଅ, ମୁଁ ସବୁ ଜାଣିଚ...ଭଗବାନ କରନ୍ତୁ...ତମ
ପୁଅର ଅଧିକରୁ ଅଧିକ ରୋଜଗାର ହଉ । ଜମିଜମା ହଳନଙ୍ଗଳ ବାନ୍ଧ
ଭଲରେ ଘର ସଂସାର କର ।.. ତମ ହଳଦଆ ଚକ ଡ଼ୁଲ ମାଣକ
ଏ ସନ ଭାଗରେ ଦେଇଚ ପରା ।

ଦାମ—ଅଉ କରନ୍ତି କଣ ? ସେଇ ମାଣେ ବୋଲିତ ଜମି, ତାକୁ ହାତରେ
ଚଷିବ କଣ ?...ଅଉ ଚଷିବାକୁ ହଳ ଲଙ୍ଗଳ ବିହନ ନଗୁଡ଼ିକ ମୋର
ବଳ କାଇଁ । ଅଇଦାକୁ ଠାକୁରେ କରିଥିଲେ ଅଉ ତନ୍ନାମାଣ କାହାଠୁଁ
ଦେଖି ଭାଗ-ସଞ୍ଜାରେ ଆଣି ହଳଟିଏ ବାନ୍ଧିବା ବୋଲି ପାଞ୍ଚୁଚୁ ।

ଗୁମାସ୍ତା—ଇହାଲ ପରା, ଭଗବାନ କରନ୍ତୁ.. ତମର ଅଧିକରୁ ଅଧିକ ହେଉ ।

ଦାମ—ମହାଜନଙ୍କ ଧିଅପା' ଭଲ ଅଚ୍ଛ ତ ?

ଗୁମାସ୍ତା—ହଁ, ସବୁ ଭଲ । ଆଜ ତ ତମ କଥା ପଚ୍ଚୁଥିଲେ !

ଦାମ—କଣ ? ..କଣ ପଚ୍ଚୁଥେଲେ ?

ଗୁମାସ୍ତା—ଗଲାତ ! ଗଲାତ ! ମହାଜନଙ୍କ ନାଁ ଶୁଣି ଡର ଲାଗୁଚ । ଲୋଓ !
ମହାଜନଙ୍କର କଣ ତାଙ୍କ ମହାଜନି କାରବାର ଛଡ଼ା ଅଉ କିଚ୍ଛୁ କଥା
ନାହିଁ!!...ପଚ୍ଚୁଥିଲେ, ପଚ୍ଚୁଥେଲେ, ଦାମ ପୁଅଟା ତ ବାହାଘର
ବାସି ବିଦେଶ କଲା । ଘରେ ଭୁଅଷୁଣୀ ବୋହୂ ଆଠ ଦଶ ବର୍ଷର ପିଲ
ପୁଅଟାକୁ ନେଇ ଦୁଇ ପ୍ରାଣୀ ହଇରାଣ ହଉ ନାହାନ୍ତି ତ ? ଏଇ କଥା
ପଚ୍ଚୁଥେଲେ ।

ଦାମ—ଦୟାବନ୍ତ ପୁରୁଷ ସେ...ତାଙ୍କ ଦୟା !!

ଗୁମାସ୍ତା—ଦୟା କ'ଣ ହେ ! ଖାତକ ଭିତରେ ତୁମେତ ତାଙ୍କର ସୁନାପୁଅ !

ଦାମ—ସୁନାପୁଅ ।

ଗୁମାସ୍ତା—ମୁଁ ମିଛ କହୁଚି ? ମହାଜନଙ୍କ ମୁହଁରୁ ଶୁଣିବ ଚାଲ । ପୁଅ ବାହା
ଟଙ୍କା କରଜ ଆଣି ଜବାବ କରିଥେଲ ଚାରିମାସ ପୂର୍ବରୁ ଦନ ଚାରି

ମାସର ସୁଧଟଙ୍କା ଅସୁଲ ହେଇ ଆସିବ । ତମ ଜବାବ ତେବେ ରଚିତ (ହଇହୋ) ଅଙ୍କକାଳ ଯୁଗରେ ଏମିତ ସର୍ବୋତ୍କୃଷ୍ଟ ପଣିଆ କେଇଟା ଲୋକଙ୍କର ଅଛି ।

ଦାମ—ମହାଜନ ତା' ହେଲେ—

ଗୁମାସ୍ତା—ଭାବି ଖ ସି···ଭା···ବି···ଖ ସି···

ଦାମ—ଠାକୁରେ ଜାଣନ୍ତି ! ମୋ'ର ତ ଡର ଥିଲା—ଏତେ ବଡ ମହାଜନ ଆମପେର ଦର୍ଶିଖିଆ ମାଛ କଥା ତାଙ୍କ ମନରେ ନ ଥବ ।

ଗୁମାସ୍ତା—ହରେରାମ ! ସେମିତ ଉପରେ ଭାସିବା ଲୋକ ସେ ନୁହନ୍ତି । ହେଇତ, ଇମକୁ ମିଛ ସୋଇଁ ପୁଅ ମତେ ସବୁ ଦେ ହାତରେ ମୁଁ ସବୁ କାରବାର କରୁଛ ··ଏଇ ନେ ନଗଦ ପଚ୍ଚିଶ··· ପଚ୍ଚିଶ ହଜାର ଟଙ୍କାର ମହାଜନ ହେଲେ ଗଣ୍ଡି ଟିକିଏ ଦେଖିବ ନାହିଁ । ଖାଣ୍ଟି ଲୋକ, ଖାଣ୍ଟି କଥା । ଅଭାବବେଳେ ଟଙ୍କା ଗଣିଦବ, ଭାବବେଳେ ଅସୁଲ କରନ୍ତ । ଧାର୍ମିକ ଲୋକ ମୋ···ଧର୍ମ ଡଙ୍ଗା ତାର ଗୁଲୁଛ ।

ଦାମ—ବୁଝିଲ ଗୁମାସ୍ତାଏ । ପହିଲ କିସ୍ତି ସୁଧଟାତ ପଇଠ କରି ଦେଇ ଆସିଛ ।

ଗୁମାସ୍ତା—କଡ଼ା କାନ୍ତି ହସାବ କରି ଆମେ ବି ତମ ଖାତାରେ ଠିକ୍ ପଇଠ ଦେଇଛୁ । ଯେତେବେଳେ ଦାକର ହବ, ଖାତା ମେଲେଇ ଦେଖେଇ ଦେବୁ ।

ଦାମ—ଆହା-ମୁଁ କ'ଣ ତମକୁ ସେ ହସାବ ମାଗୁଛ—ଗୁମାସ୍ତାଏ ! ଧନ ପଦର ତଳେ ପୁଅ ଟଙ୍କା ପଠେଇଥିଲା—ଭାବୁଥିଲି ଟଙ୍କା କୋଡ଼ିଏଟା ନେଇ ··

ଗୁମାସ୍ତା—ଜଠିଲି·· ମୁଁ ଜଠିଲି ! ମୁଁ କଣ ତମ ପାଖକୁ ଚାଗିଦାରେ ଅସିଥିଲି ।

ଦାମ—ନାହିଁମ ଗୁମାସ୍ତାଏ । ମୁଁ କହୁଥିଲି କ—

ଗୁମାସ୍ତା—ମୁଁ ତ ମୋଟେ ଶୁଣିବ ନାହିଁ···ତେବେ କହବ କ'ଣ !

ଦାମ—ମୋ' କଥା ଟିକିଏ ଶୁଣ ।

ଗୁମାସ୍ତା—ଏଇ କାନରେ ହାତ ଦେଲି ।

ଦାମ—(ହସି) ତେମେତ ଅଚ୍ଛା ଲୋକ ଗୁମାସ୍ତାଏ, ମୁଁ କ'ଣ କହୁଥିଲି ନଶୁଣି—

ଗୁମାସ୍ତା—କ'ଣ ଅଉ କହବ ? ମୁଁ ଯାହା କହୁଛ, ମହାଜନେ ଅମର ଖାଣ୍ଟି ଲୋକ—ତାଙ୍କ ମୁହଁରେ ସେ କହୁଚନ୍ତି, ଖାତକଙ୍କ ହତରେ ତମେ

ତାଙ୍କର ସୁନାପୁଅ । ନାଇଁ ନାଇଁ ଆଜ ଯଦି ସେ ଶୁଣିଲେ, ମୁଁ ତମ ଘରକୁ ଆସି ତାଙ୍କ ମହାଜନି ଟଙ୍କାର ତାଗିଦା କରୁଚି, ତା'ହେଲେ···

ଦାମ—ସେ କିଛୁ ଶୁଣିବେ ନାଇଁ । ତେବେ ଶୁଣ ମୋ' କଥା, ପୁଅ ଦ'କୋଡ଼ି ଦଶଟଙ୍କା ପଠେଇଥିଲା । ମନରେ ପାଞ୍ଚିଲି କି ଥୋକ, ସବୁଟଙ୍କା ନେଇ, ଏ ପୁନଅଯା ଏ ସୁଧଟା ଅସୁଲ ପକେଇ ଦେଇ, ବାକି ଯାହାହେଲା ମୂଳଆଡ଼କୁ ପଇଠ କରିଦେବ, ହେଲେ···

ଗୁମସ୍ତା—ଓଃହୋ, କାଇଁକି ସେ ହିସାବ ଭଲ ତେବେ ମତେ ଦଉଚ --

ଦାମ—ଶୁଣ ସେଇଠୁ କ'ଣ ହେଲା ।··ବଶୀଅବୋଉ କହିଲା—ସୁଦାଶ'ବୁଡ଼ି, ବୋହୁଟା ନୂଆଲୁଗା ଖଣ୍ଡେ ପିନ୍ଧିବ ନାଇଁ । ଶାଶୁଙ୍କ କଥା ଶୁଣି ବୋହୂ ଜିଇଦ ଧରି ବସିଲେ, ଶାଶୁଙ୍କ ପେଇଁ ଲୁଗା ନ ହେଲେ, ସେ ନୂଆଲୁଗା ପିନ୍ଧିବ ନାଇଁ । ଶାଶୁ ଗୁଣମଣି ମତେ ସେଇଠୁ ତା' ଭିତରକୁ ଟାଣିନେଇ କହନା, ମୋ ପେଇଁ ଖଣ୍ଡେ ଗାମୁଛା କାଇଁକି ନହେବନେ, ତାଙ୍କ ପାଇଁ ନୂଆ କିଣାହବକାଇଁ ।···କ'ଣ ଆଜ କରିବି । କ୍ଷୀଣିଆ ପୁଅ ଘରେଅଛି ତା ପେଇଁ ପେଣ୍ଡେ, କୁରୁତା ଖଣ୍ଡେ ନ କର ମୁଁ ମୋ'ପେଇ ଗାମୁଛା କିଣିବି । ଏମିତ ହଉ, ହଉ ଅମରି ନୁଗାପଟାରେ କୋଡ଼ିଏଟଙ୍କା ବାହାରିଲା । ଦଶଟଙ୍କା ଘରଖଇ···ଅଉ କୋଡ଼ିଏ ଟଙ୍କା ଥୁଆହେଇଚି ଯେ—

ଗୁମାସ୍ତା—ବୁଝିଲି ସୋଇଁପୁଅ···ତମେ ଗାଈ ଚରେଇଲେ ଆମେ ମଣିଷ ଚରଉଚୁ । କିଣୁ ମହାଜନ ପାଖରେ କୋଡ଼ିଏବର୍ଷ କଟେଇଲି—ଖାତକ ପରଖିବାକୁ ମତେ ଅଉ ବାକୀଅଛି ନା-? ଆମେ ଜାଣୁ । ତମେ ଅଧିଆ ଖାତକ ନୁହଁ । ଆମ ଟଙ୍କା ତମଘରେ ସିଲ ହୋଇ ଥୁଆ ହେଇଚି । ତମ ମନ ଯଦି ଗୁହୁଁଚ, ଦଶ, କୋଡ଼ିଏ ଯାହା ପାରୁଚ ନେଇ ଦେଇଆସ । ଟଙ୍କା କ'ଣ କାହାକୁ ପିଟାଲଗୁଚି । ହେଲେ ମୋ' ସାନକୁହା ମାନ, ଗୃଷକୁ··ବଳଦ କଣିବା ପାଇଁ କହୁଥିଲି ପରି । ଆଇଦା ସାଲ ଗୃଷ ଅଉ କାହାଘରେ । ଏ କୋଡ଼ିଏ ସାଙ୍ଗକୁ ଅଉ କିଛୁ ଯୋଗାଡ଼ କରି ଏଇ ମୁଣ୍ଡିରୁ ବଳଦ ହଳେ କିଣିପକା—ବୁଝିଲି···

କ୍ଷୀଣିଆ—(ଭିତରୁ) ଦେ' ସବୁ ପିଇ ଦେ···ହଁ···ଦେ' ବଳଦ ଟାଣିଚୁଣି··· ଅଉ ନାଇଁରେ ଦୋରପାଣି··ଦେ' ବଳଦ ଟାଣିଚୁଣି ।···କ'ଣ ମୁହଁ ବୁଲେଇ ତେଣିକି ଗୃହିଁଲୁଣି ଅଉ ପାଇବୁ ନାଇଁ···। ହଉ, ହେଲା-ଏଭଳି ପିଇ ନ ଦେଲେ ମୁଁ ତୋ' ସାଙ୍ଗରେ ମୋଟେ କଥା କହିବି ନାଇଁ ।

ଗୁମାସ୍ତା—କଉ ସୋଇଁଏ···ତମ ଘରେ ତ ଦୁଧଖିଆ ପିଲା କେହି ନାହାନ୍ତି । ଏ "ଦେ ବଳଦ ଟାଣିଟୁଣି" କାହାପାଇଁ କୋଉ ପିଲା ତମର ଅବୁଝା ହଉଚି ?

ଦାମ—କାହିଁ ନାହିଁତ, ଅବୁଝା ଆଉ କିଏ ହେବ ।

କୁଣିଆ—(ଭିତରେ) ଦେ, ପିଇଦେ ଭଲ—

ଗୁମାସ୍ତା—ଏଇ ଶୁଣୁନ—

ଦାମ—(ହସି) ଓ, ଏଇଆ । ଆମ କୁଣିଆ ତା' ବଳଦ ଦାମୁଣିକୁ ଖୋଜୁଚି ।

ଗୁମାସ୍ତା—କ'ଣ ! ଦାମୁଣିକୁ ଖୋଜୁଚି ଏମିତି ଆଦର ସୁଆଗ କରି—

ଦାମ—ଆସୁନ ଦେଖିବ··· ଏଇ ଦେଖ···

ଗୁମାସ୍ତା—(ଟିକିଏ ରହି) ବାଃ !··· ଭାରି ଚଢ଼ିଆ ଦେଖାଚି—

ଦାମ—କ'ଣ ?

ଗୁମାସ୍ତା—ଏଇ ଦାମୁଣିଟି ମ !

ଦାମ—ହଁ କୁଣିଆ ତାକୁ ଖୋଇ ଦେଇ ପାଳୁଚି, ନିଜ ପେଟରୁ କାଟି ତାକୁ ଖାଇବାକୁ ଦଉ, ତା' ଜୀବନ ସେ ।

ଗୁମାସ୍ତା—ଏଇଟି କଣ ତମ ଗାଈ ପୁଅ ?

ଦାମ—ନାହିଁ, ଆମ ଗାଈ ପୁଅଟିଏ ଥିଲା ଯେ, ତାକୁ ବଦଳେଇ ଛଅଟଙ୍କା ବାଗଣା ଉପ ଦେଇ ଏଇଟିକି ଆଣିଚି । ଆଉ ମାସ ଦ'ଟାରେ ଦାନ୍ତିଲେ ତାକୁ ମଣ କରିବ ବୋଲି ପାଞ୍ଚିଚି—

ଗୁମାସ୍ତା—ଏଇଟିକି କେବେ ଆଣିଲେ ?

ଦାମ—ଏଇ ମାସ ଡେଇଁଟା ହବ'··· ସେ ଯୋଉଦିନ ଆମ ଘରକୁ ଆସିଥିଲ, ସେଇଦିନ ମୁଁ ଗଠି ପାଇଲି ଯେ ବଣିଆର ବାମ ହେଇଚି ।

ଗୁମାସ୍ତା—ଅଚ୍ଛା, ଅଚ୍ଛା, ମୁଁ ତା' ହେଲେ ଯାଏ ବହୁତ ବେଳ ମୁଁ ଏଠି ଅଟକା ଗଲିଣି ।

ଦାମ—ହଉ ଗୁମାସ୍ତାଏ । ମଝିରେ ମଝିରେ ଆସୁଥିବ, ଅବଧାନ ।

ଗୁମାସ୍ତା—ଅବଧାନ ! (ପ୍ରସ୍ଥାନ, ନେତର ପ୍ରବେଶ)

ନେତ—ଗୁମାସ୍ତା କାହିଁକି ଆସିଥିଲା ?

ଦାମ—ସେ ଆମ ପାଖକୁ ଆସି ନଥିଲା ମ । ଏଇବାଟେ ଯାଉ ଯାଉ ପଶି ଆସିଲା ।

ନେତ—ତାକୁ ଦେଖିଲେ ମୋ' ଗୁଡ଼ ଥରେ ।

ଦାମ—କାହିଁକି ?

ନେତ—ତାଇଁକି ଅଉ କ'ଣ ? ମହାଜନ ଘର ଗୁମାସ୍ତା—ମହାଜନ ପାଖରେ ଯେତେବେଳେ ଅମେ ମୁଣ୍ଡ ବିକିଛୁ ।

ଦାମ—ନାଇଁଲୋ ନେତ, କଣ୍ଣୁ ମହାଜନ ସେମିତ ଲୋକ ନୁହେଁ ।

ନେତ—ନୁହେଁ, ସଭିଏଁ କହୁଚନ୍ତି ତା' ମେନ୍ତେ ତଣ୍ଟିକଟା ମହାଜନ ଏ ମୁଲକରେ ନାହାନ୍ତି ।

ଦାମ—ଅଁଲୋ ! ଯିଏ ତା' ପାଉଣା ଗଣ୍ଡାକ ନଦବ, ତା' ତଣ୍ଟି ସିଏ କାଟିବ । ଅମର ସେଥିରେ କ'ଣ ଅଛି । ଦେ' ମତେ ତେଲ ବୋତଲଟା ଦବୁଟି··· ମୁଁ ଗାଧୋଇ ପଡ଼ି ଅସେ ।

କୁଣିଆ—(ଦୂରରୁ) ହୁଁ ଯିଜ ନ ଥିଲୁ ପରା ପୁଣି ଯିଇଲୁ କେମିତ ?

ଦାମ—(ବଡ଼ ପାଟିରେ) କିରେ କୁଣିଆ—ଇସ୍କୁଲରୁ ଅସି ସେଇ ବଜଳା ସାଙ୍ଗରେ ଲାଗିଚୁ ? ତୋ'ର କ'ଣ ଅଉ ଗାଧୁଆ ଖିଆ ହବ ନାଇଁ ।

କୁଣିଆ—ଯାଉଚ ବାପା ! ଅଜି ବଜଳା ଅଉ ମୁଁ ଉହେଁ ସାଙ୍ଗ ହେଇ ନଈରେ ଗାଧୋଇବୁ ।

ଦାମ—ବଜଳା ଗାଧୋଇବ ?

କୁଣିଆ—ହଁ, କୋଉଦିନୁ ସେ ଗାଧୋଇ ନାଇଁ । ତା' ଦେହ ମଇଳା ହେଇ ଗଲଣି—ଅଜି ସେ ଗାଧୋଇବ । ଅ ବଜଳା··

[ଷଷ୍ଠ ଦୃଶ୍ୟ । ମହାଜନଙ୍କ ଘର]

କଣ୍ଣୁ—ହୁଁ ତା' ହେଲେ ଏମିତ କଥା । ପୁଅ ଗୁଡ଼ାକ ଭଲ ଟଙ୍କା ରୋଜଗାର କଲଣି··· ଅଉ ବାପା ଏଣେ କରଜ ଶୁଝି, ହାଲ ବାନ୍ଧ ଗୃହ ଭରିବାକୁ ଅଣ୍ଟା ଭିଡ଼ି ବାହାରିଲଣି ।

ଗୁମାସ୍ତା—ପୁଅ ବାହାଘର କରି ତ ଅଣ୍ଟା ନଇଁ ପଡ଼ିଥିଲା । ଏଇନେ ପୁଅ ରୋଜଗାରରୁ ପୁଣି ଅଣ୍ଟା ସଳଖି ଠିଆ ହେଲଣି । ବୁଝୁ ନାହାନ୍ତି ଅଜ୍ଞା । ମାସକୁ ମାସ ପଢ ବାହାରୁ ଦଶ ପଚିଶ ଟଙ୍କା ଘରକୁ ଅସେ, ତା' ହେଲେ ଦାମ ସୋଇଁର ଅଉ ପରୁଆ କଣ ? ବର୍ଷ ଗୋଟାଏ ନ ପୁରୁଣୁ ତ ସେ ଅପଣଙ୍କ ଦୁଆରେ ଟଙ୍କା ଢନାଣ ଅଣି ଫୋପାଡ଼ି ଦେଇ ଯିବ··· ସୁଧ ବାବତକୁ ଟଙ୍କା ପଚିଶଟା ଅମେ ପାଇବା ନାଇଁ ।

କଣ୍ଣୁ—ହୁଁ । ଦାମ ସାହୁ ଗୋଟାଏ ମୁଣ୍ଡ··· କି, ଗୋଟାଏ ଖାତାକରେ ବା ସେ ଗଣା । ସେ ପୁଣି ଭଲରେ ଭଲରେ ମତେ ଟଙ୍କା ଶୁଝି ଦେଇ ତା' କାଗଜଟା ମୋ'ଠୁଁ ଫେରେଇ ନବ ? କଣ୍ଣୁ ମହାଜନ ପୁଣି ହାରିଯିବ ଦାମ ସୋଇଁ ପାଖରେ ।

ଗୁମାସ୍ତା—ମନେହେଉ କାହିଁ ସେଇ ଅଗା ଦେଖା ଯାଉଚ ।

କଣ୍ଡୁ—ତମକୁ ଆଉ କ'ଣ ଦେଖା ଯା'ନ୍ତା କି ? ମୋ' ଘରେ ଗୁମାସ୍ତାଗିରି କରି ତମର ତେଣେ କୋଠା ଘର ଠିଆ ହେଲାଣି । ହେଲେ ମୋ' ଭଲ ଆଉ ତେମେ ଦେଖିଲ ନାହିଁ ।

ଗୁମାସ୍ତା—ମୋ' ମନଭ ସେଇଥି ପାଇଁ ଘର ଧରଚ… ମୁଁ ଆଉ କ'ଣ କରିବି ଆଜ୍ଞା କୁହନ୍ତୁ ।

କଣ୍ଡୁ—କ'ଣ କରିବ ସେ ବୁଦ୍ଧି ମୁଁ ବତେଇ ବାଢ, ତମେ ମାସକୁ ମାସ ମୋଠୁଁ ଟଙ୍କା ଗଣି ନଉଚ କାହିଁକି ? ଅପଦାର୍ଥ… ଅମଙ୍ଗଳିଆ କୋଉଠିକାର ।

ଗୁମାସ୍ତା—ମୁଁ କହୁଥିଲି କି…

କଣ୍ଡୁ—ତମ ଶ୍ରୀମୁଖରୁ ବାଣୀ ଶୁଣିବା ଆଉ ମୋର ଲୋଡ଼ା ନାହିଁ । ହଳଦିଆ ଚକ ଜମି ମାଣକ କେମିତି ମୋ' ହାତକୁ…ସେ ବୁଦ୍ଧି ବାହାର କର ।

ଗୁମାସ୍ତା—ଆପଣଙ୍କ ଆଶା ସିନା ଦାମ ସୋଇଁର ଜମି ମାଣକ ଉପରେ… ହେଲେ ମୁଁ ଆଜି ତା' ଘରେ ଯାଇ ଦେଖି ଆସିଲି ନା…

କଣ୍ଡୁ—ଏଁ, କଣ ଦେଖିଲ ତମେ ?

ଗୁମାସ୍ତା—ବଉଳା !

କଣ୍ଡୁ—ବଉଳା !!

ଗୁମାସ୍ତ—ଗୋଟାଏ ଦାମ୍ଭୁଣ୍ଡୀ, ଆଜ୍ଞା ।

କଣ୍ଡୁ—ବୁଝିଲି ଗୁମାସ୍ତା, ମୁଁ ଭାବୁଚି ତା' ହଜାରେ ଟଙ୍କିଆ ଜମି ମାଣକ କଥା… ଆଉ ତମ ଆଖି ଯାଇ ଗୋଟାଏ ଘର ଛୁଟକର ଦାମ୍ଭୁଣ୍ଡୀ ଉପରେ ।

ଗୁମାସ୍ତା—ଆପଣ ଏଇଆ କହିବେ ବୋଲି ସେଇ ଡରରେ ପରା ମୁଁ ପାଟି ଫିଟଉ ନ ଥିଲି ।

କଣ୍ଡୁ—ତମର ଆଉ ପାଟି ଫିଟାଇବା ଦରକାର ନାହିଁ । ଚୁପ୍ ହେଇ ବସ ।… ଅନଉଁ ଅନଉଁ ଜମି ମାଣଟା ହାତରୁ ଖୁଲିଯିବ ।

ଗୁମାସ୍ତା—ମୋ ଛୋଟ କଥା ଟିକେ ଶୁଣନ୍ତୁ ଆଜ୍ଞା । ଏମିତି ଦାମ୍ଭୁଣ୍ଡୀ କୋଟିକରେ ଗୋଟିଏ ମିଳିବ ନାହିଁ ।

କଣ୍ଡୁ—ତମ ଜନ୍ମଟା ଗୁହାଳରେ ମୋର ଗାଈ ଗୋରୁ ଭର୍ତ୍ତି… ମତେ ପୁଣି ତେମେ ଦାମ୍ଭୁଣ୍ଡୀ ଦେଖାଉଚ ।

ଗୁମାସ୍ତା—ଅପଣ ମତେ ଯେତେ ଗାଳି ଗୁଲଜ କଲେ ବି ଅଜ୍ଞା ମୁଁ କହିବି, ଏମିତି ଦାମୁରି କୋଟିକରେ ଗୋଟିଏ ନାହିଁ । ଏତେ ଲକ୍ଷଣବନ୍ତ ଗୋରୁ ମୋ' ଜୀବନରେ ମୁଁ କେଉଁଠି ଦେଖିନି । କଇଁଫୁଲ ପରି ଦେହ, ମୁଣ୍ଡରେ କସର ଗୁନ୍ଦ, ସରୁ ଲାଞ୍ଜ, ମୁନିଆ ମୁନିଆ ସରୁ ସରୁ ଶିଙ୍ଗ । ଖାଇ ପିଇ ଦୋରସ୍ତ ହେଇ ରହିଚି ।

କଣ୍ଣୁ—ତମର ମୁଣ୍ଡ ଖରାପ ହେଇ ଗଲାଣି ଦେଖୁଚି । ଦାମୁରିଟା ତା' ଘରେ ଅଛି, କହିଲେ ବିକି ଦବ । ତା' ଗାଈ ପୁଅଟି ସେଇଟା ।

ଗୁମାସ୍ତା—ନାହିଁ ଅଜ୍ଞା, ଗାଈ ପୁଅ ବଦଳେଇ ଏଇଟାକୁ ଅଣିଚି ।

କଣ୍ଣୁ—ବିକିବ ନାହିଁ···

ଗୁମାସ୍ତା—ନାହିଁ—କହୁଚି ପରା ଅଉ ପଟେ ତା ସାଙ୍ଗକୁ ଯୋଗାଡ଼ କରି ଚାଷ କରିବ । ଏତେ ଲକ୍ଷଣ ବନ୍ତ ଗୋରୁଟା ଯୋଉଦିନ ସେ ତା ଘରକୁ ଆସିଲା ସେଇଦିନ ସେ ଶଠି ପାଇଲା ଯେ ତା' ପୁଅର ଚାକିରି ହେଇଚି ।

କଣ୍ଣୁ—କଣ, କ'ଣ କହିଲ ଗୁମାସ୍ତାଏ ?

ଗୁମାସ୍ତା—ହଁ, ଅଜ୍ଞା, ମୁଁ ପରା ନିଜେ ଦେଖି ଅସିଲି । ମତେ ତ ଅଜ୍ଞା ଏ ଗୋରୁଗାଈ ବିଦ୍ୟାଟିକେ ଜଣା ଅଛି । ମୁଁ ଲେଖି ଦେଉଚି ଅଜ୍ଞା ଏ ଦାମୁରିଟା ଯଦି ତା' ଘରେ ରହିବନି, ଖାଲି ତା'ର ଲକ୍ଷଣରୁ ଏ ଦାମ ସୋଇଁ ଅଉ ଦାମ ସୋଇଁ ହେଇ ରହିବ ନାହିଁ । ବର୍ଷ ଦି'ଟାରେ ସେ ନୋଟାଏ ଦଶମାଣିଆ ଚାଷୀ ହେଇ ଠିଆ ହବ । ଅପଣ ଅଉ ତା' ଜମି ମାଣକ ଅଣିବେ କଣ ?

କଣ୍ଣୁ—ହଁ, ସେ ଦାମୁରିଟାକୁ ତା' ହେଲେ ତା'ଠୁ ଅଗେ ଖସେଇବାକୁ ପଡ଼ିବ ।

ଗୁମାସ୍ତା—ଯେମିତି ହଉ ଅଜ୍ଞା, ସେ ଖୁରି ଅସି ଅପଣଙ୍କ ଗୁହାଳ ମାଡ଼ିବା ଦରକାର ।

କଣ୍ଣୁ—ଦାପ ସୋଇଁ ପୁଅ ବଣିଆ କଲିକତାରେ ଅଛି ।

ଗୁମାସ୍ତା—ଅଜ୍ଞା ।

କଣ୍ଣୁ—ଭୁଅଷୁଣୀଟା—

ଗୁମାସ୍ତା—ଏଇଠି ଅଛି ।

କଣ୍ଣୁ—ବଣିଆ ତମକୁ ମାନେ କେମିତି ?

ଗୁମାସ୍ତା—ଭାରି ମାନେ ଅଜ୍ଞା । ଗୁମାସ୍ତା ମଉସା, ଗୁମାସ୍ତା ମଉସା ବୋଲି ପାଣି ପିଇବ ନାହିଁ ।

କଣ୍ଢୁ—ତା' ଠିକଣା ପାଇବ ?

ଗୁମାସ୍ତା—ଇଏ ଗୋଟାଏ କବା କଥା—

କଣ୍ଢୁ—ହଉ, କଲମ କାଗଜ ଆଣ ।

ଗୁମାସ୍ତା—ଆଣିଲି ଅଜ୍ଞା ।

କଣ୍ଢୁ—ଲେଖ । ଚିଠି ଲେଖ—

ଗୁମାସ୍ତା—କି ଚିଠି ଅଜ୍ଞା ? କାହା ପାଖକୁ କିଏ ଲେଖିବ ?

କଣ୍ଢୁ—ଲେଖ ମୁଁ ଯାହା କହୁଚି ।...ସନ, ତାରିଖ ଦିଅ—

ଗୁମାସ୍ତା—ଦେଲି—

କଣ୍ଢୁ—ହଁ, ଲେଖ । (ଡାକିଲେ) କଲ୍ୟାଣୀୟୁ ବାପ ବଣି, ଜଗନ୍ନାଥଙ୍କ କୃପାରୁ ଆମର ଏଠି ସବୁ କୁଶଳ । ତୋ କୁଶଳକୁ ସେଠି ମା ଗଙ୍ଗାକାଳି ଅଛନ୍ତି । ବାବୁରେ, ତୁ ଗୃହକର୍ମ କରି ଟଙ୍କା କମେଇଚୁ ଜାଣି ଖୁସିହେଲି । ତୋ' ବାପ କହୁଥିଲା—କରଜ ନ ସୁଝିବାଯାଏ ବଣିଆ ବିଦେଶରୁ ଆସିବ ନାହିଁ । ଭଲକଥା । ଅଟେ ପରଟେବାଙ୍ଗିରୁ ଗନ୍ଧସ ହେଲେ, ନିଜ ଘର ବାନ୍ଧିବୁ. ତୁ ମୋର ଅତି ଆପଣାର ଭାବି ଏପରି ଲେଖୁଚି । ମୁଁ ଏଇ ଦିନ ଦୁଇ ତଳେ ଲମ ଘରଆଡେ ଯାଇଥିଲି । ଭୂଆସୁଣୀ-ଟାକୁ ଦେଖି ମନେ ଭାରି ବାଧିଲା । ତୁ'ତ ବାହାଘର ଅଷ୍ଟମଙ୍ଗଳା ବାସି ବୋହୂଟାକୁ ଛାଡ଼ି ବିଦେଶ ଚାଲୁ । ତିନିଶ ଟଙ୍କା କରଜ ସୁଝୁ ସୁଝୁ ତୋତେ ଦି'ବରଷ ଲାଗିଯିବ । ଏ ଦି'ବରଷକାଳ କ'ଣ ଷୋଳ ସତର ବର୍ଷର ଭୂଆସୁଣୀଟା ଏମିତ ତୋ' ବାଟଗୁହିଁ ବସିରହିଥିବ । ନୂଆବୋହୂ ସେ ଗାଈଗୋରୁଠୁ ହୀନ । ତା ପାଟି କ'ଣ କେବେ ଫିଟିବ ନା ଶାଶୁ ଶଶୁର ତାର ଏ ଦୁଃଖ ବୁଝିବେ । ତୋତେ ନିଜ ପୁଅ ମନେକରି ଏ ଚିଠି ଲେଖୁଚି । ମୋ' କଥାରୁ ମାନ ବାପ—ବୋହୂଟାକୁ ତୋ ପାଖକୁ ନେଇଯା । ଏଠି ସେ ମୁଠାଏ ଖାଇ ଖଣ୍ଡେ ପିନ୍ଧୁଥିଲା, ସେଠି ସେମିତ ମୁଠାଏ ଖାଇ ଖଣ୍ଡେ ପିନ୍ଧିବ । ଖର୍ଚ୍ଚ କିଛି ଅଧିକା ପଡ଼ିବ ନାହିଁ । ଆଗେ ତମେ ଦି'ପ୍ରାଣୀ ସୁଖରେ ଘରସଂସାର କର । ତା'ପରେ ଜମିବାଡ଼ି ଘରଦ୍ୱାର, କରଜବାରଜ କଥା ବୁଝିବ ? ଯୋଉଟା ଦାଣ୍ଡିକୁ ସୁନ୍ଦର, ସେଇକଥା ମୁଁ ଲେଖିଲି, ଦେଖିକି ତୋ ମନକୁ ପାଇଲେ ମୋ'କଥା ରଖିବୁ, ନହେଲେ ଏ ଚିଠି ଖଣ୍ଡିକ ଚିରି ଫୋପାଡ଼ିଦବୁ ।

ତୋ ପାଖରେ ମୁଁ କହୁଛି ଲୁଗୁଡ଼ନ ବାପ, ସେଦନ ଉପ ଗାଁ ଗୋହଗ୍ଧି ବାଟେ ଯାଉଥିଲି, ଦେଖିଲି ବୋହୂଟା କୂଅ ମୂଳେ ଠିଆ ହେଇ ଅଖିରୁ ଲୁହ ପୋଛୁଛ, ଶାଶୁ, ଶଶୁରଙ୍କ ମୁହଁରେ ତ ବୋହୂର ପ୍ରଶଂସା ଯେ କହ୍ୱବ ନାହିଁ ...ଆଜ ତା' ହେଲେ ତାର କି' ଦୁଃଖ ? କାହିଁକ ତା ଅଖିରୁ ଲୁହ ଝରୁଚ ? । ଏଇଥିରୁ ସବୁ ବୁଝିବୁ । ଆଜ ଏତକରେ ରହୁଲି, ଚଠିପାଇ ଚଠି ଦବୁ । ଇତ ଶୁଭାକାଂକ୍ଷୀ

—ଗୁମାସ୍ତା ମଙ୍ଗୁସା—

—ପୁନଶ୍ଚ—

ଏ ଚଠି କଥା ତୁ ବାପା ବୋଉଙ୍କୁ କହୁ ଜଣେଇବୁ ନାହିଁ ! ଏଥିରେ ଲୁଗୃ ଗୁଡ଼ୁବ କହୁ ନାହିଁ ଯେ, ତେବେ ଆଜକାଲିକା ବାପ ମା ଏଇ ସାମାନ୍ୟ କଥାକୁ କେତେ କଥା ବାହାର କର, ମୋ ଉପରେ ବୃଥାଟାରେ ଦୋଷ ଦେବେ, କୁତ ଟ୍ରେଜଗାରଆ ବୁଢିଆ ପୁଅ ତୋତେ ଆଉ ଅଧିକା କ'ଣ ବୁଝେଇବ, ରହୁଲି ।

କଣ୍ଡୁ—ବେଶ୍ ! ହେଲାତ ?

ଗୁମାସ୍ତ—ଅଜ୍ଞା ହେଲା ଯେ...ଏ ସୁଦ୍ଧୁ ମିଛ କଥା ଘୁରାକ—

କଣ୍ଡୁ—ହଇଏ ମଦନ, ତମକୁ କେତେ ବର୍ଷ ହେଲା ?

ଗୁମାସ୍ତା—ଅଜ୍ଞା ବୟାଳିଶ !

କଣ୍ଡୁ—ଏ ବୟାଳିଶ ବର୍ଷରେ ବୟାଳିଶ ପଦ ସତ କଥା ତେମେ କହୁଥିବନା ?

ଗୁମାସ୍ତା—ଯାହା କହୁଚନ୍ତ ଅଜ୍ଞା ।

କଣ୍ଡୁ—ଚଠିଟା କେମିତ ହେଲା ଅଜ୍ଞା ।

ଗୁମାସ୍ତା—ଅଉ ପଚ୍ଛରବାକୁ ଅଛୁ । ଏପଦ ଠିକ୍ କାଟୁ କହବ । ଭୂଅସୁଣୀଟା କେମିଟିକ୍ ଗୃଲିଗଲେ ।

କଣ୍ଡୁ—ହଁ, କୋଉ ଭରଜା ଭଲ୍ଭ ସହ୍ୱ ପାରବ ଯେ, ତା' ଗେରସ୍ତ ମୂଠା ମୂଠା ଟଙ୍କା ଟ୍ରେଜଗାର କର ବାପ ମାଙ୍କ ପାଖକୁ ପଠେଇ ଦଉଚ, ସବୁଯାକ ଗୋଟେଇ ପୋଟେଇ ନିଜ ବାକ୍ସରେ ସାଇତ ରଖିବ, ସେଇଠୁ ଉ—

ଗୁମାସ୍ତା—ସେଇଠୁ ତ ଅଜ୍ଞା ( ହସ ସହ୍ୱତ ) ହଳଦଆ ଚକ ଜମିମାଣକରେ ବଉଳା ହଳ ଯୋଚ୍ଛ ହବ, ହେଲେ ପାଞ୍ଚଶଟା ଦାମ ସୋଲି ହାତରେ ନ ରହ୍ୱ, ରହ୍ୱବ କଣ୍ଡୁ ମହାଜନଙ୍କ କୋଠିଆ ହାତରେ ।...

( ଦୁହେଁ ହସି ଉଠିଲେ )

( ଚତୁର୍ଥ ଦୃଶ୍ୟ । ଦାମ ସ୍ୱାଇଁର ଘର )

ନେତ—ବଣିଆ ପୁଣି ଶଠି ନେଖିଲ ତା' ଘରଜାକୁ ସିଏ ବାଲ୍‌କତା ନେଇଯିବ ।

ଦାମ—ଦେଇତ ନେଖିଚ, ଅଜ କଉଚୁ କଣ ?

ନେତ—ଏ ବୁଦ୍ଧି ତା' ମୁଣ୍ଡରେ କିଏ ପୁରେଇଲ ?

ଦାମ—ଏଁ ! ଏ କଥାରେ ମୋ ହାତ ଗୋଡ଼ ଅଜ ଚଳୁଚ ନେତ !

ନେତ—ବଣିଆ ପରି ପୁଅ… ସିଏ ପୁଣି ଏ ବୁଦ୍ଧି ଧରିଲା । ହଉଏ, ବୋହୁ କଣ ଅଜ ତା ପାଖକୁ ନୁଚେଇ ନୁଚେଇ ଶଠି ନେଖିଲ ?

ଦାମ—ମୁଁ ସେଇ କଥା ଭାବୁଚ ନେତ ? ଏ ବହୁର କାମ । ବୋହୁଠୁ କଥାଟା ଉଠି ନ ଥେଲେ ପୁଅ ତାକୁ ନବାପେଇଁ ଏତେ କାଗର ଧରନ୍ତା କାହିଁକି ?

ନେତ—ବୋହୁ ତ ମୋର ଏମିତିକା ନ ଥେଲା । କଣ ତାର ଏମିତ ଅଭାବ ହେଲ ଯେ,…

ଦାମ—ସେ ପୁଅ… ଇଏ ବୋହୂ… ତାଙ୍କ ଭାବ ଅଭାବ କଥା ଅମେ ଅଜ କଣ ବିଚାର କରବା ? ଏଣିକି ଅମ ଭାଗ୍ୟ ନେଇ ଅମେ ରହିବା କଥା ।

ନେତ—କଣା ତା' ହେଲେ ତେମେ କହୁଛ ଯେ ? ବହୁ ଯିବ ?

ଦାମ—ତୁ କହ ?

ନେତ—ମୁଁ କହୁଚ – ସେ ଯାଉ ।

ଦାମ—ବହୁକୁ ପଚାରବ ଯାଇଁ ?

ନେତ—ପଚାରଲେ କଣା ସେ ମୁହଁ ଉପରେ 'ହଁ' କରବ ? ହେଲେ ଥରେ ଯେତେବେଳେ ଏ କଥା ଉଠିଲାଣି, ସେ ଯାଉ, ବର୍ଷେ, ଛ ମାସ ସେଠି ରହି ଅସୁ । ତେଣିକି, ତାଙ୍କର ଯଦ ଘର କରିବାର ମନ ଥାଏ, ସେ ତାଙ୍କର କରଜ ଶୁଝିବେ, ଘରଦ୍ୱାର କରବେ… ଅମର ଅଉ କେଇଦନ କି ?

ଦାମ—ହଁ, ଯାହା କହୁଚୁ… ଅମର ଅଉ କଣ ଅଛି ? ସେ ଯାଉ ।

ନେତ—ଶେଷ ଅଡ଼କୁ କଣା ନେଖିଚଟି… ରେ କୁଣିଅ… ପଡ଼ିଚୁଟି ।

କୁଣିଅ—ଥରେ ପରି ପଢ଼ିଲ, ଅଉ କେଉଥର ପଢ଼ିବି ।… ଇଲ୍ଲେ ମୋ ବଉଳା ଅଇଲଣି ।… ହେ ବଉଳା । (ଗୁଣୁ ଯାଉଥିଲ)

ନେଢ—କୁଶିଆ ! ବସ ଏଠେ । ଭାବ ଗୋଟା ନାଆଁ ନଗା ଦାମ୍ଭସ୍ମି ହେଲଣ ଯେ ଯଉଣୁ ଅସୁଣୁ ତାର କଥା ।

ଦାମ—ଅଜ ସଂକ୍ରାନ୍ତି ପର୍ବଦିନେ କାଇଁକି ଗୋରୁଟାଙ୍କୁ ଏ କଥା କହୁଛୁ ନେଢ ! ପଢ଼ କୁଶିଆ··· ପଢ଼ ।

କୁଶିଅ—(ପଢ଼ିଲା) ମଢେ ଛୁଟି ମିଳୁନାଇଁ ବୋଲି ଯାଇ ପାରିଲି ନାହିଁ । ଏଇ ଅମେଇସା ବାସି ଘା ଭାଇ ଯାଇ ତାଙ୍କୁ ନେଇ ଆସିବ ।··· ଏଥିରେ ଯେମିତି ହେଲା ନ ହୁଏ ।

ଦାମ—ହୁଁ ।······

କୁଶିଅ—ହେ, ବଉଳା, ତେଣେ କୁଆଡ଼େ ଯାଉଚୁ । ଆଜ ପୋଷ ପାଇଁ ଗୋଟାଏ ଭଲ ଜନଷ ଦେଖିଛ ।··· ଓ ହୋ-ହୋ କେଡ଼େ ଗୁନ୍ଦୁକ୍‌ରେ··· ମୁହଁଟା ମୋ ଦେହରେ ଘସି ପକାଇଲେ ଦେଇ ଦେବ ପର୍‌··· ଅଗେ ମୋ ଡାକରେ 'ଓ' କର । ବଉଳା··· ବଉଳାରେ·· ହୁଁ ଇଏ ଯେ ମୋ ସୁନା ବଉଳା । ନେ, ଅଁ କର୍, କ'ଣ ଜାଣିଚୁ ଅରଣା ପିଠା··

ନେଢ—ଦେଖୁଚ, ପଧାନ ଘର ବୋହୁ ଘରୁ ଭାର ଅସିଥିଲା ଯେ, ସେ ଅମକୁ ଦେଇଥିଲେ, ଏଇ ଗୋଟିକ ବୋଲି ଅରଣା ପିଠା··· କୁଶିଅ ନିଜେ ନ ଖାଇ ବଉଳାକୁ ଖୋଇଲା । କାହିଁକି ପିଲାଟା ତା ସଙ୍ଗରେ ଏମିତି ମାୟା ନରେଇଚ ।

ଦାମ—ମଣିଷ ମଣିଷଠଁ ମାୟା ତୁଟେଇ ଦଉଚ ·· ହେଲେ ଏ ପଶୁ ଜୀବଟାକୁ ତୁଅଟା କେମିତି ଅପଣାର କରି ଯାଣିଚ । ଏତକ ହେଲେ ଏ ଅଖି ଦେଖୁ ।··· ଦେଲୁ ଗାମୁଛାଟା ଦେଲୁ. ମୁଁ ଟିକିଏ ହାତଅଡୁ ବୁଲି ଅସେ ।···

[ପଞ୍ଚମ ଦୃଶ୍ୟ । ଦନକ ପରର ଘଟଣା, ଦାମ ସ୍ୱାଇଁ ଘରକୁ ମହାଜନ ଓ ଗୁମସ୍ତା ଅସିଛନ୍ତି]

ଗୁମାସ୍ତା—ବୁଝିଲ ସୋଇଁପୁଅ—ତମ ଭାଗ୍ୟ, ମହାଜନ ନିଜେ ତମ ଘରକୁ ଅସିଛନ୍ତି । ଯାହାହେଉ, ତମେ ଗୋଟାଏ କିଛି ନିଷ୍ପତ୍ତି କର ।

ଦାମ—ମୁଁ ତ ସବୁ କଥା ତମ ହାତରେ ସଁପି ଦେଇଛି । ତମେ ଯାହା କରିବ । ମୁଁ କ'ଣ ସେଥିରୁ ବାହାର ଯିବ ।

କଣୁ—ପୁଅ ଅଉ ଟଙ୍କା ପଇସା ପଠାଉ ନାଇଁ ପରା ?

ଦାମ—କାହିଁ ? ଛ' ମାସ ହେଇଗଲା, ଗୋଟାଏ ପଇସା ଦେଖା ନାହିଁ, ପୁଅ ବୋହୂ ଭେଣେ ରହିଲେ, ଆମେ ମରୁଚୁ ।

କଣ୍ଣୁ—ଓଃ, ବହୁ ଯାଇ ସେଠି ପଗ ?

ଗୁମାସ୍ତା—ଆଉ କ'ଣ କି ଆଜ୍ଞା ! ବହୁ ଯେତେବେଳେ ପୁଅ ପାଖରେ ·· କଥାରେ କହନ୍ତି ନାହିଁ ··· ପାଖରେ ଶୁଏ, କାନରେ କୁହେ, ତା କଥା କି ଅନ୍ୟଥା ହୁଏ ।

କଣ୍ଣୁ—ହୁଁ, ତା' ହେଲେ କଣ କହୁଚ କୁହ ଦାମ, ମୁଁ ତ ଆଉ ଅପେକ୍ଷା କରି ପାରିବି ନାହିଁ, ନାଲିସ୍ କି ପଠେଇ ଦେବି ।

ଦାମ—ନାଲିସ୍ ?

କଣ୍ଣୁ—ଏ ଦାମ୍ନୁଟିକି କାହାର ଦାମ, ତମର ?

ଦାମ—ଆଜ୍ଞା ।

କଣ୍ଣୁ—ବିକିବ ?

ଦାମ—ବିକିବ ?

ଗୁମାସ୍ତା—ଶୁଣ ସୋଇଁ—ମୁଁ ତମକୁ ସଫା କହି ଦେଉଚି ତମେ ଏଇ କିସ୍ତି ଶେଷ ସୁଦ୍ଧା ସୁଧଟା ପଇଠି କରି ମୂଳ ବାବଦକୁ ପଚିଶ ଟଙ୍କା ଦିଅ ।

ଦାମ—ଏତେ ଟଙ୍କା ମୋ ପାଖରେ କାହିଁ ।

ଗୁମାସ୍ତା—ଗାଈ ଦାମ୍ନୁଟି ଅଛନ୍ତି, ବିକି ଦଉନ ।

କଣ୍ଣୁ—ବିକିବେ ଯଦି, ଆମକୁ ଦାମ୍ନୁଟା ଦିଅନ୍ତୁ—ଆମେ ନବା ।

ଗୁମାସ୍ତା—ଆପଣଙ୍କ ଏଇଟା କଣ ହବ ଆଜ୍ଞା, କି କାମରେ ଲାଗିବ ?

କଣ୍ଣୁ—ଆଃ ! ଆମର କିଛି କାମରେ ନ ଲାଗୁ ·· ଏ ବିଚାରି ତ ଟୋକୁ ଲଙ୍ଗୁଡ଼ରେ ପାରି ହେଇଯିବ ।

ଗୁମାସ୍ତା—ତା' ହେଲେ ସୋଇଁ, ତମର ଆଉ କିଛି ଚିନ୍ତା ନାହିଁ—ମହାଜନଙ୍କ ଶ୍ରୀମୁଖରୁ ଯେତେବେଳେ ବାହାରିଲାଣି ଦାମ୍ନୁଟାକୁ ଦେଇ ତେମେ ଏଇନେ ରକ୍ଷା ପାଇଯାଅ କଣ କହୁଚ ?

ଦାମ—ନିଜେ ମହାଜନେ ଯେତେବେଳେ କହୁଛନ୍ତି, ମୁଁ କ'ଣ ଆଉ ନାହିଁ କରିବି ?

ଗୁମାସ୍ତା—ବାସ, ଦାମ୍ନୁଟିକି ଏଠିକି ଅଣି ମୂଲ କର—ସଙ୍ଗେ ସଙ୍ଗେ କାମ ତୁଟି ଯାଉ । ଭାରି ସୁବିଧାରେ ଏକା ତମେ ଏ ଘାଟି ପାରି ହେଇଗଲ ସୋଇଁଏ ।

ଦାମ—ଅରେ କୁଣିଅ—ବଉଳାକୁ ଏଟିକି ଅଣିବୁଝିରେ ପୁଅ ।

(ବଉଳାକୁ ଧରି କୁଣିଅ ଆସିଲା)

କୁଣିଅ—ଅ ବଉଳା···ଅ··· କିଣା ବାପା !

ଦାମ—ନାହିଁରେ ପୁଅ—ବଉଳାକୁ ବିକିଦେବା, ଏ ମହାଜନେ ନେବେ ।

କୁଣିଅ—ଇସ୍ ଭାରି ନେଲାବାଲା ··ଅରେ ବଉଳା ଅମେ ପଳେଇବା ।

(ବଉଳାକୁ ନେଇ ପଳେଇଲା)

ଗୁମାସ୍ତା—ଇଏ କଣ ? ଟୋକାଟା ଚଳେଇଲା···ତା ପଛେ ପଛେ ତା ବୋଲ
ମାନିଲା ପରି ଦାମୁରିଟା ଊଅଁ ମାରି ପଳେଇଲା ।

ଦାମ—ମୂଲ ଅଙ୍କ ଆପଣ ଯାହା କହିବେ, ମୋର ରାଜି । ହେଲେ ଅଙ୍କ ସେ
ଟୋକାଟା ଦାମୁରିଟାଠେଇଁ ଡାଜାବନ ଦେଇ ଦେଇଚି, ସହଜରେ ସେ
ତାକୁ ଛାଡ଼ିବ ନାହିଁ ।

କଣୁ—ତା'ହେଲେ ?

ଦାମ—ମୁଁ ପିନା ବକ୍ସବାକୁ ହଁ କରିଦେଲି ମହାଜନେ, ମୁଁ ଜାଣୁଛି ଟୋକାଟା
ତାକୁ ପୋଟେ ଛାଡ଼ିବ ନାହିଁ ।

ଗୁମାସ୍ତା—ଇଏ କି ଅଲିଅଳ କଥା କହୁଚ କାର୍ଡ଼ ପୋଇଁଏ- ଟୋକାଟା ପୁଣି
ଛାଡ଼ିବ ନାହିଁ କଣ ?

କଣୁ—ଅଚ୍ଛା, ଅଚ୍ଛା, ହେଲା ଏବେ ମୋର କି ସେ ଦାମୁରିରେ ଲୋଡ଼ାନାହିଁ-।
ଅସହେ ଗୁମାସ୍ତାଏ ଅସ...

ଦାମ—ତା'ହେଲେ ମହାଜନେ···

କଣୁ—ଇରେସ୍ତରେ ଦେଖାଦେଇ—

ଦାମ—ଟିକିଏ ଶୁଣନ୍ତୁ ମହାଜନେ··· । ଗାଈ ଦୁ'ଟା ମୋର ଅଛନ୍ତି···

କଣୁ—ମୋର ତନି ତନି ଗୁହାଳ ଗାଈ--ତୁମେ ମତେ ଗାଈ ଦେଖାଉଚ—
ଅସ ମଦନ···

ଗୁମାସ୍ତା—ଏଡ଼େବଡ଼ ଟୋଟାଏ ମଉକା ତମେ ହାତରୁ ଛାଡ଼ିଦେଲ ସ୍ୱାଇଁ ଏ···
ହଉ,

ଦାମ--ଶୁଣନ୍ତୁ ମହାଜନେ--ଶୁଣନ୍ତୁ--ଅପଣଙ୍କ କଥା ମାନିଲି ;

ଗୁମାସ୍ତା—କହୁଚ ପରି--ତମ ପିଲାଟା ତାକୁ ଛାଡ଼ିବ ନାହିଁ--ଏମିତ ଅଳିଅଳ
ପୁଅ ତମର--

ଦାମ—ଛାଡ଼, ଗୁମାସ୍ତାଏ···କାଲି ହେଁରୁ ଟିକିଏ ତେମେ ଗୁଲିଅଇଲେ, କୁଣିଅ
ନିଦରୁ ଉଠିବା ଅଗରୁ--

ଗୁମାସ୍ତା—ଅଚ୍ଛା, ଅଚ୍ଛା, ସେଇଅ ହେଲ । ମୁଁ ମାଛୁ ଅନ୍ଧାରରୁ ଏସି ହାଜର ହେବ ।

କଣ୍ଣୁ—ଅମେ ତା'ହେଲେ ଯାଉଚୁ ।

ଦାମ—ହଉଅଜ୍ଞା, ଦୟା ରଖିଥିବେ, ଜୁହାର ।

(ଗୁମାସ୍ତା ଚାଲିଗଲେ । ଅସିଲା ନେତ)

ନେତ—ଦାମ୍ବୁଶ୍ୱଟାକୁ ଦେଇଦେଲେ କୁଶିଆ ଅଜ ଧୂଅଧର ରହିବ ନାହିଁ ।

ଦାମ—ଯା'ବୋଲ ନିଜ ଘରଡ଼ିଅ ଖଣ୍ଡେକ କଣ ମହାଜନ ହାତକୁ ଟେକିଦେବ । ଏଇକିଷ୍ଟେ ସୁଧ ଜମାଦେଇ ମୁଁ ନିଜେ କଲକତା ଯିବ ।

ନେତ—କାଲି ସକାଳୁ ସେ ଅସି ବଳଦକୁ ନେବେ ?

ଦାମ—ହଁ, ବଡ଼ ଭୋରରୁ । କୁଶିଅକୁ ଏକଥା କିଛୁ କହିବ ନାହିଁ । (ପ୍ରସ୍ଥାନ)

( ଷଷ୍ଠ ଦୃଶ୍ୟ ପର ଦିନ ସକାଳର କଥା । ଗୁମାସ୍ତା ଓ ଦାମ ଅତି ସନ୍ତର୍ପଣରେ ଗୁହାଳ ଦୁଆର ମୁହଁକୁ ଅସିଲେ )

ଦାମ—ଅସ ଗୁମାସ୍ତା ବାବୁ—ଗୁହାଳ ଦୁଆର ମୁହଁକୁ ଅସ ଇଏ କଣ, ଏ ଟୋକାଟା କେତେବେଳେ ତା ମା' ପାଖରୁ ଉଠି ଆସି ଏ ଗୁହାଳଟାରେ ଦାମ୍ବୁଶ୍ୱ ପଘାଟାକୁ ଧରି ଶୋଇଛି ।

ଗୁମାସ୍ତା—ଚାଷି କରନା ଧୀରେ ଦାମ୍ବୁଶ୍ୱ ବେକରୁ ପଘାଟା ଫିଟେଇ ପଘାଟା ନେଇ ଦିଅ । ହଁ · ବାସ ଏଥର ଲବାଟ ଅଜକେଇ ଅଣ·· ଓଃ କେଡେ ଟାଣ କରୁଛି ହେ ହୁଙ୍କନାଇ ଚାଲ୍, ବାଣ୍ଡୁଆ ଚାଲ ।

ଦାମ—(କାନ୍ଦି) ଦେଖିଛ ଗୁମାସ୍ତା ଏ, ପଶୁ ଜୀବନ ହୋଇକି କିପରି ତା ପାଖ ଛାଡ଼ ଯାଉନାହିଁ ।

ଗୁମାସ୍ତା—ଏଁ । ତମେ ବ କ'ଣ କୁଶିଆ ପରି ପିଲା ହେଇ ଯାଉଚ ଯେ, କାନ୍ଦୁଚ···ଯାଅ ଯାଅ···ଘରକୁ ଯାଅ···ଚାଲ ବଳଦ···ଚାଲ ।···

( ସେମାନେ ଚାଲିଗଲେ )

କୁଶିଅ—ବଳଦ···ସକାଳ ହେଲଣି ବଳଦ ଉଠ···କରେ ଓ କରୁନୁ କାହିଁକି—ବଳଦ—ଏଁ ? ବଳଦ କାହିଁ···ବଳଦ···ବଳଦ, ବାପା ବଳଦ କାହିଁ···ମୋ ବଳଦ···ବୋଉ··· ।

ନେତ—ବଳଦ ନାହିଁ···

କୁଶିଅ—ବଳଦ ନାହିଁ···ତାକୁ ବିକିଦେଲ···ବଳଦ ··ବଳଦ· ·ବଳଦ··· ବଳଦ··· । ( ଦଉଡ଼ି ଚାଲିଗଲା )

ନେପ—ଶୁଣୁଚ···ବଉଳା ଡାକ୍ତ ସେ ନଈ ଅଡ଼କୁ ଗଲାଣି···ଭଦ୍ର ନକ୍ଷଠା···
ଶେମେ ଯାଅ ଭଲା । ( ଦାମ ସ୍ତ୍ରାଇଁ ଅସିଲା )

ଦାମ—ଏଁ ! କୁଶିଆ···କୁଶିଆ ·· ( ପ୍ରସ୍ଥାନ )

( ସପ୍ତମ ଦୃଶ୍ୟ, ନଈକୂଳ, କୁଶିଆ ନଈ ବନ୍ଧରେ ଠିଆ ହୋଇଚ )

କୁଶିଆ—ବଉଳା···ବଉଳା ତୁ ଗୁଲିଗଲୁ···ବଉଳା ।

ଦାମ—କୁଶିଆ··· ।

କୁଶିଆ—ଏଇ ଦେଖ ବାପା·· ବଉଳାକୁ ଡଙ୍ଗାରେ ବସେଇ ସେ ଗୁମାସ୍ତା
ନେଇ ଯାଉଚ···
( ଚିତ୍କାର କରି ଉଠେ ) ବଉଳା···ବଉଳା··· ।
( ନଈକୁ ଡେଇଁ ପଡ଼ୁଥିଲା )

ଦାମ—( ଧରି ପକେଇ )···ଅରେ ··ଚଣ୍ଡାଳ ତୁ କଣ କରୁଚୁରେ ଦାମୁସାହା
ପେଇଁ ତୁ ଭରା ନଈକି ଡେଇଁ ପଡ଼ିବାକୁ ବସିଚୁ··· ।

କୁଶିଆ—ବଉଳାକୁ ଭେଟେ ଦେଇଦେଲ ବାପା···ତା ସାଙ୍ଗରେ ମତେ ଦେଇ
ଦେଲ ନାଇଁ··· । ( କାନ୍ଦୁଥାଏ )

( ଅକାଶ ବାଣୀ, କଟକଙ୍କ ସୌଜନ୍ୟରୁ )





# ପଞ୍ଚକନ୍ୟା

ଶ୍ରୀ ମହେଶ୍ୱର ମୂଳିଆ

ଲକ୍ଷ୍ମୀବତୀ ଶଂଖା ମୋର କାଢ଼ିନେଲ···· ? ମୁଁ ହେଲି ବିଧବା,
        ଲିଭାଇ ଦେଲ ସିନ୍ଦୁର ମୋ ତରୁଣୀ ମଥ ରେ ?
ମୁଁ ହେଲି କୁଳଟା ଆଜି—ଖୋଜି ଖୋଜି ଘନବନ, ନଦୀ ବା ପ୍ରାନ୍ତର,
ପୁଣ୍ୟତୋୟା ଗର୍ଭେ ନିଜେ ଆଶ୍ରୟ ଦେବାକୁ,
                    ପାପ ଜାତ ସନ୍ତାନରେ ସମାଧି ଟିକଏ !
ମୋ ପାଖେ ରାବଣ ନାହିଁ—ନାହିଁ ସୂର୍ଯ୍ୟ, ବାସବ ବା ତାପସୀ କିଏ ହେ,
ଅବୈଧ ପ୍ରଣୟ ସାଥେ ହେବାକୁ ଗୋ ଭାଗୀ,
ଯୋଗୀ ମନଭୁଲା ରୂପ ବନ୍ଧାଲି କାହିଁକି ?
କାହିଁ ସେ ଶ୍ରୀ ରାମଚନ୍ଦ୍ର ଅବା ମୋର ପ୍ରାଣପ୍ରିୟ ଯଢପଢ କେହି,
କୁମ୍ଭୀପାକ ନରକରୁ ମତେ ଆଜି କରିବେ ନିସ୍ତାର···
ମୁଁ ନୁହେଁ ଅହଲ୍ୟା, ତାରା, ମନ୍ଦୋଦରୀ· କୁନ୍ତୀ ବା ଦ୍ରୌପଦୀ,
ମୂର୍ତ୍ତିମନ୍ତୀ ସତୀର ପ୍ରତୀକ,
ଜାରଜାତ ସନ୍ତାନର ଜନନୀ ମୁଁ—ଲୁଣ୍ଠାଇ ପାରେନ ଆହା ପ୍ରୀତିର ମମତା
ରକତ···ମାଂସର ମୋହ···ସହଜାତ · ଆଦମ ପ୍ରବୃତ୍ତି !
ମୁଁ ଲୋଡ଼େଁ ବଳିଷ୍ଠ ବାହୁ, ସୁସ୍ଥ ଦେହ, ଯୌବନଶ୍ରୀ, ସ୍ୱର୍ଗ ଓ ସାନିଧ୍ୟ,
ମୁଁ ଲୋଡ଼େଁ ସମ୍ଭୋଗ···ପଛେ ବୈଧବ୍ୟର ଗୁରୁବ୍ୟଥା ବହି,
ସେ ସମ୍ଭୋଗ ନୁହେଁ ଯାହା ସଧବାର ଶଂଖର କାର୍ଦ୍ଧୋଷ,
                ସତୀପୂତ ସୀମନ୍ତ-ସିନ୍ଦୂର,
ସେ ସମ୍ଭୋଗ ନୁହେଁ ଖାଲି ରୂପ ଆଉ ଯୌବନର କ୍ରୀଡ଼ା,
ବ୍ରୀଡ଼ାବତୀ ନାରୀସମ ଖେଳିବାକୁ ଉମର ମେଳରେ,
ଗଣିକା ଟଳରେ ପଶି, ଅଭିନବ ଶତ ଶଯ୍ୟା ନାୟିକାର ସେଜେ,

ଶାସ୍ତ୍ରମତେ !
ସତୀର ସ୍ମାରକୀ ମୋର ପ୍ରିୟ ପଞ୍ଚକନ୍ୟା,
ତମକୁ ମୁଁ ସ୍ମରେ କର୍ତ୍ତବ୍ୟ ସାୟଂ ଓ ପ୍ରଭାତେ,
ହେ ଅହଲ୍ୟା, ସତୀ ଅଗ୍ରଗଣ୍ୟା···
ଦେବ-ଦାସୀ ସମ ତମ ଚରଣ-ରେଣୁରେ,
ପାପଭରା... ତନୁ ମୋର ହେଉ ହେ ପବନ !
ମୁଁ ହୁଏ ପବନ—
କାଉର୍ଥିକ ବେଦ ବାକ୍ୟେ, ଶାଢକାର ବ୍ୟୁହ ଜଗତେ,
ମୋ ଲାଗି କଣ୍ଟକ ନୁହେଁ, ଏତେ ଶାସ୍ତ୍ର, ସ୍ତୋତ୍ର ଅବା ମନ୍ତ୍ରର ମହତ୍ତ୍ୱ;
ଏତେ ଯୁକ୍ତି, ଏତେ ଜକ୍ତ ଯାଜ୍ଞିକ ଯନ୍ତ୍ରଣା,
ମୋର ଲାଗିଁ ଧରଣୀରେ ହେଲେଣି ସମ୍ଭୂତ,
ସୁଗ୍ରୀବ ବା ବିଭୀଷଣ ସମ କେତେ ସତୀର ସ୍ତାବକ,
ମୁଁ ଆଜ କୁଳଟା ନୁହେଁ, ବଂଶୋଦ୍ଧାର ଯୁଗର ପ୍ରଥମା,
ମୋ ପାଇଁ ରହିଛି କେତେ ମାୟାବାଦୀ ଇନ୍ଦ୍ରଜାଲ ମନ୍ତ୍ର,
ମୋ ସମାଜ ସୃଜନ୍ତି ଶତ ଶତ ଅବର୍ଥ୍ୟ ଆସ୍ତ୍ରୀ,
ଜନ୍ମ-ରୋଧ ମହୌଷଧି କେତେ.
ମୋଲାଗି ରହିଛି ପୁଣି ଫାର୍ମାସୀ ବା ହାସପାତାଳରେ,
ଶତ ଶତ ଅସତୀରେ ଦେବାକୁ ପ୍ରଶ୍ରୟ ଅବା ଆଶ୍ରୟ ଟିକିଏ,
ତେଣୁ ଆଜ ମୁହିଁ ପରମାୟୁ—ସୁ-ଶ୍ରୀ ସ୍ୱାସ୍ଥ୍ୟ, ଅଖଣ୍ଡ ଅସ୍ତିତ୍ୱ,
ନାରୀତ୍ୱର ସ୍ନିଗ୍ଧ ତାର ପୂର୍ଣ୍ଣ ଯୁ କାମନା ।
ଅବୈଧ ସନ୍ତାନେ ଆଜ ଫିଙ୍ଗିବାକୁ ହେବ ନାହିଁ
ଗଙ୍ଗା ଅବା ମହାନଦୀ ଅତଳ ଗରଭେ,
ଅଥବା ଦୁର୍ଭେଦ୍ୟ ବନେ, ନିରନ୍ଧ୍ର ଅଂଧାରେ କେଉଁ ଗଣିକା ଗଳରେ;
ସହିବାକୁ ଅହେତୁକ ଅନ୍ତଃସତ୍ତ୍ୱା-ପ୍ରସୂତିର ବ୍ୟଥା,
ମୁଁ ଅକ୍ଷତା...ଅବାହିତା—ଅଗତ ଯୌବନା,
ଅଯୋନିସମ୍ଭବା ସୁତ ଧରିବି ଗର୍ଭରେ ।
ମୋ ଶିରିରେ ବହେ ରକ୍ତ—ଅସ୍ଥି ମାଂସ, ମେଦର ମମତା,
ଜାରକ କୁକ୍ଷିରେ ମୋର ଶନୈଶ୍ଚର ଦୃଷ୍ଟି,
ନୟନରେ ତନ୍ଦ୍ରା ଜାଗେ—ପ୍ରାଣେ ଲାଗେ କ୍ଷୁଧା, ତୃଷା—ଦୁର୍ବାର ବୁଭୁକ୍ଷା,
ମୁଁ ଖୋଜେ ରେସ୍ତୋରାଂ ଅବା ଏ ଷ୍ଟ୍ରୀଟ୍‌ର ସଂକୀର୍ଣ୍ଣ ବସ୍ତିରେ,
ହୋଟେଲ ବା ଫୁଟ୍‌ପାଥ୍‌ରେ—ଜନାକୀର୍ଣ୍ଣ ସହର, ନଗରେ,
ରକ୍ତବସ୍ତ୍ରେ, ଭଗ୍ନଶ୍ୱାସେ, ଜୀର୍ଣ୍ଣ - ତନୁ ବହି,
ହାତ ପାତି, ଲୁହ ପାତି ମାଗେ ଯେବେ କେବେ,
ଭିକ୍ଷାଂ...ଦେହି ଭିକ୍ଷାଂ ଦେହି

ସେତେବେଳେ ତମ ଶାସ୍ତ୍ର କରିଛୁ ଧାରଣ ?
ଅକାରଣ !
ମୁଁ ଖୋଜି ପାଏ ନା ମୋର ଆତ୍ମସତ୍ତା, ସତୀତ୍ୱ, ପ୍ରତ୍ୟୟ,
ଉତ୍ତରଳ ଯୌବନର ସଂଜ୍ଞା ବା ଫୁଟିଛି,
ମୋ କର୍ମ ଫଳ୍ଗୁଟରେ ଯେବେ ଥିବ ନିବେ ଗ୍ଲାନି କିବା କ୍ଲାନ୍ତି, ଅବସାଦ,
ଅବା ପାପ କଳଙ୍କରେ ସହଶାନ୍ତି-ସଙ୍କୋଚ ବା ଆତ୍ମତୃପ୍ତି ଥିବେ,
[ ଇଏ ଯେବେ ସତ୍ୟହୁଏ ନିଶ୍ଚିତ ସମ୍ଭବ ]
ଏହାଠାରୁ ଶତଗୁଣେ ହେଉ ଭ୍ରାନ୍ତିକର,
ଆଜଠାରୁ ଶତବର୍ଷ ପରେ,
ନରନ୍ଧ ଦେଶରେ ଆଜ ପଞ୍ଚକନ୍ୟା ହେବେନି ପୂଜିତା,
ଧର୍ମଶ୍ରୁ ନିସ୍ପୃହକ—ହେ ମାନ୍ଧ ବାଗୀଶ,
ନିବେଦ ନିର୍ଜୀବ ହେବ ଶାସ୍ତ୍ର ସ୍ତୁପମାନ.
ବସ୍ତୁଛି ଗରଭେ ସବୁ ହେବ ଅବସାର !
ଆଜଠାରୁ ଶତବର୍ଷ ପରେ,
ଏ ମାଟିରେ ମଥାରଣୀ ହଏ ଯେବେ ମତେଇ ପଡ଼ୁରେ,
ମୁଁ କହିବ ପଞ୍ଚକନ୍ୟା ପାଇବ ସମାଧି,
ତା ସାଥେ ପୋଡ଼ିବ ପୁଣି ରାମାୟଣ, ମହାଭାରତ ବି,
ଏଇ ଦେଖ ମୁର୍ତ୍ତିମନ୍ତ ସନ୍ତକ ଟିକକ ।
ନୂତନ ଜାତକେ ଆଜି ରଚିଛୁ ସ୍ୱାକ୍ଷର;
ଶତ ଶତ କନ୍ୟା ସେ ତ ଶତ ଶତ ଅହଲ୍ୟା ଦ୍ରୋପଦୀ,
ସତୀପ୍ରସୂ ଏ ଭାରତବର୍ଷେ ॥






# ସାହିତ୍ୟ ସମାଲୋଚନାର ପରିମାପକ



ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ

(ପାଶ୍ଚାତ୍ୟ ଦୃଷ୍ଟିରେ)

ଆବହମାନ କାଳରୁ ସାହିତ୍ୟ, ସଙ୍ଗୀତ, ନୃତ୍ୟ, ସ୍ଥାପତ୍ୟ କିମ୍ବା ଚିତ୍ର ଆଦି କଳାହିଁ ସଭ୍ୟତାର ମାନଦଣ୍ଡ ହୋଇ ଆସିଛି । ଭିନ୍ନ ଭିନ୍ନ ଯୁଗରେ ସମାଜ, ବେଷ୍ଟନୀ, ଜଳବାୟୁ ଓ ବାହ୍ୟ ପ୍ରକୃତିର ବିଭିନ୍ନ ରୂପ ତଦୁପରି ପ୍ରଭାବ ପକାଇଛି । ଏଥିଲାଗି ପାଶ୍ଚାତ୍ୟ ସମାଲୋଚକମାନେ ସାହିତ୍ୟକୁ ସମାଜର ଦର୍ପଣ ଆଖ୍ୟା ଦେଇଥାନ୍ତି । ଏହି ଦୃଷ୍ଟିରୁ ଓଡ଼ିଆ ସାହିତ୍ୟର ବିକାଶଧାରା ପ୍ରାରମ୍ଭରୁ ଆଲୋଚନା କରିଗଲେ ତାହାର ନାନା ଦିଗ ଓ ନାନା ପ୍ରଭାବ ଲକ୍ଷିତ ହୁଏ । ପୁଣି ସେହି ସକଳ ଦିଗ ଓ ପ୍ରଭାବ ଭିତରେ ପ୍ରତ୍ୟେକ ବିଶିଷ୍ଟ ଲେଖକଙ୍କ ଚେତନା ସ୍ୱାତନ୍ତ୍ର୍ୟ ଅବଶ୍ୟ ବିଦ୍ୟମାନ । ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଦେଶମାନଙ୍କର ସାହିତ୍ୟ ପ୍ରାରମ୍ଭ ଅବସ୍ଥାରେ ଧର୍ମ ଉପରେହିଁ ପ୍ରତିଷ୍ଠିତ ଥିଲା । ଇନ୍ଦ୍ର, ବରୁଣ, କୁବେର, ଦଣ୍ଡୀ,

ଲକ୍ଷ୍ମୀ, ସରସ୍ୱତୀ ଆଦି ଦେବଦେବୀଙ୍କ ପରି ପାଶ୍ଚାତ୍ୟର ଜୁପିଟର, ଜୁନୋ, ମିନର୍ଭା, ଭିନସ୍ ବା ମ୍ୟାଜେସ୍ ଆଦି ଗ୍ରୀସୀୟ ତଥା ରୋମୀୟ ବହୁ ଦେବ-ଦେବୀଙ୍କର ଅଲୌକିକ କ୍ରିୟାକଳାପ ପ୍ରାଚୀନ ପୁରାଣ ସାହିତ୍ୟମାନଙ୍କରେ ବର୍ଣ୍ଣିତ ଅଛି ।

ଭାରତର ମହାକବି କାଳିଦାସଙ୍କଠାରୁ ଆରମ୍ଭ କରି, ଏବଂ ଆମ୍ଭମାନଙ୍କର ଓଡ଼ିଆ କବି ସାରଳାଦାସଙ୍କ ଯୁଗରୁ ଆଜିପର୍ଯ୍ୟନ୍ତ ପୁରାଣ ଆଖ୍ୟାୟିକାର ବିଷୟ-ବସ୍ତୁକୁ ସାହିତ୍ୟ ଛାଡ଼ିପାରି ନାହିଁ । ଜଗନ୍ନାଥ ଦାସଙ୍କ ଭାଗବତଭଳି ଧର୍ମ ସାହିତ୍ୟର ପ୍ରାବଲ୍ୟ ଏବେସୁଦ୍ଧା ଦେଶର ବହୁସଂଖ୍ୟକ ପାଠକଙ୍କୁ ପ୍ରଭାବିତ କରୁଛି । ବାଇବଲ୍, କୋରାନ କିମ୍ବା ଭାରତୀୟ ପୁରାଣ କଥା ଅପେକ୍ଷା ଐତିହାସିକ ଓ କାଳ୍ପନିକ ବିଷୟବସ୍ତୁ ଦ୍ୱାରା ଆଧୁନିକ ସାହିତ୍ୟର ଅଙ୍ଗ ଅଧିକ ପୁଷ୍ଟ ହେଉ-ଥିଲେହେଁ ପ୍ରାଚୀନ ଆଖ୍ୟାୟିକା ଓ ଚିନ୍ତାଧାରା ସେଥିରୁ ପୂର୍ଣ୍ଣରୂପେ ଅବହେଳିତ ହୋଇ ନାହିଁ ।" ଐତିହାସିକ ଓ ଦୈନନ୍ଦିନ ଘଟଣାବଳୀର ବାସ୍ତବ ଚିତ୍ରହିଁ ଆଧୁନିକ ସାହିତ୍ୟର ପ୍ରଧାନ ଲକ୍ଷଣରୂପେ ପ୍ରତୀୟମାନ ହେଲେହେଁ ଧର୍ମସାହିତ୍ୟର ଭିତ୍ତିକୁ ପରିତ୍ୟାଗ କରିବା ଏହା ପକ୍ଷରେ କେବେହେଲେ ସମ୍ଭବପର ନୁହେଁ ।

ଆଜି ମଧ୍ୟ ସାହିତ୍ୟରେ ରାମାୟଣ, ମହାଭାରତ, ଭାଗବତ ପ୍ରଭୃତି ଗ୍ରନ୍ଥରୁ ଧର୍ମମୂଳକ ବା ଭକ୍ତିରସାତ୍ମକ ବହୁ ଉପାଖ୍ୟାନ ଉପଜୀବ୍ୟ ବିଷୟ ହୋଇଛି । ଆଜି ମଧ୍ୟ ନୃତ୍ୟରେ ଶିବତାଣ୍ଡବ, ଚିତ୍ରପଟରେ ସୀତା, ବୁଦ୍ଧ ଆଦି ଚରିତ ପ୍ରଦର୍ଶିତ ହୋଇଥାଏ । ପୁଣି ଗୋଟିଏ ଗୋଟିଏ ଧର୍ମ ମଧ୍ୟରେ ନାନା ଉପ-ଧର୍ମର ବା ଧର୍ମ ମତ ବାଦର ଆବର୍ତ୍ତନ ଦ୍ୱାରା ସାହିତ୍ୟର ରୂପ ଯୁଗେ ଯୁଗେ ବଦଳି ଯାଇଛି । ହିନ୍ଦୁ ପୁରାଣ ଭଳି ବୌଦ୍ଧ ଜାତକ, ବୈଷ୍ଣବ ସାହିତ୍ୟ, ଶ୍ରଦ୍ଧା ଭକ୍ତି ମୂଳକ କାବ୍ୟ କବିତା ପ୍ରଚୁର ପରିମାଣରେ ଦେଖାଯାଏ । ହିନ୍ଦୁ ମନ୍ଦିର ଭଳି ବୌଦ୍ଧ ସ୍ତୂପର ଓ ଅଜନ୍ତାର ଚିତ୍ରାବଳୀ କିମ୍ବା ମୁସଲମାନ ଧର୍ମର ପ୍ରଭାବ ଦ୍ୱାରା ମସ୍‌ଜିଦ୍ ପ୍ରଭୃତିର ସ୍ଥାପତ୍ୟରେ ସ୍ୱାତନ୍ତ୍ର୍ୟ ଲକ୍ଷିତ ହୁଏ ।

ବୌଦ୍ଧମାନ ଓ ଦୋହାଁ ଯୁଗରୁ ଆମ୍ଭମାନଙ୍କର ଓଡ଼ିଆ ସାହିତ୍ୟ କିଭଳି ନାନା ଧର୍ମମତ ଦ୍ୱାରା ଭିନ୍ନ ଭିନ୍ନ ସମୟରେ ପ୍ରଭାବିତ ହୋଇ ଆସିଛି, ତାହା ସହଜରେ ଆମ୍ଭେମାନେ ବୁଝିପାରୁଁ । ସାରଳାଦାସ ଓ ପଞ୍ଚସଖାଙ୍କ ଯୁଗପରେ ଶ୍ରୀଚୈତନ୍ୟଙ୍କ ପ୍ରବର୍ତ୍ତିତ ଶୁଦ୍ଧାଭକ୍ତିଭାବରେ ଅନୁପ୍ରାଣିତ ହୋଇ କବି ଦୀନକୃଷ୍ଣଙ୍କଠାରୁ ଆରମ୍ଭ-କରି କବିସୂର୍ଯ୍ୟ ବଳଦେବଙ୍କ ପର୍ଯ୍ୟନ୍ତ ଉତ୍କଳ ସାହିତ୍ୟାକାଶର ଉଜ୍ଜ୍ୱଳ ଜ୍ୟୋତିଷ୍କ-ପୁଞ୍ଜ କେତେ ଛନ୍ଦ ସଙ୍ଗୀତ ଓ ଭାଷାବିଭବରେ ଏ ସାହିତ୍ୟକୁ ଯେ ସମୃଦ୍ଧ ଓ ରସାଣିତ କରିଛନ୍ତି ତାହା ଚିନ୍ତା କଲେ ବିସ୍ମିତ ହେବାକୁ ପଡ଼େ । ମହାକବି

ଉପେନ୍ଦ୍ରଭଞ୍ଜଙ୍କର ଶୃଙ୍ଗାରିକ ମନ୍ତ୍ରର ସାଧନା ଏବଂ ଭୀମଭୋଇଙ୍କ ଶୂନ୍ୟୋପାସନା ସାହିତ୍ୟକୁ ନବ ନବ ଭାବ, ଛନ୍ଦ ଓ ରୂପରେ ମଣ୍ଡନ କରିଛି । ବର୍ତ୍ତମାନ ଯୁଗରେ ମଧ୍ୟ ବ୍ରାହ୍ମଧର୍ମର ଏକେଶ୍ୱରବାଦ ଓ ଜାତିଭେଦ ଅସ୍ୱୀକାର ଫଳରେ ସାହିତ୍ୟର ଅଧୁନିକ ନାମ-କରଣ ହୋଇଛି । ଅଜ ଆଉ ବିଭିନ୍ନ ଦେବଦେବୀଙ୍କ କଣାଣ ସାହିତ୍ୟରେ ପ୍ରଧାନ ସ୍ଥାନ ଅଧିକାର କରୁ ନାହିଁ କିମ୍ବା ଗ୍ରନ୍ଥାରମ୍ଭରେ ଦେବ-ଦେବୀଙ୍କ ମଙ୍ଗଳାଚରଣ ପରିଦୃଷ୍ଟ ହେଉ ନାହିଁ ।

ଧର୍ମ ବ୍ୟତୀତ ଅଉ ଯେଉଁ ବସ୍ତୁଟି ସାହିତ୍ୟର ଉତ୍ତେଜକରୂପେ କାର୍ଯ୍ୟ କରିଛି, ତାହାର ନାମ ସଂଗ୍ରାମ । ଅତୀତରେ ରାମାୟଣ ଓ ମହାଭାରତ ଗୋଟିଏ ବିରାଟ ଯୁଦ୍ଧ ଉପରେହିଁ ରଚିତ ହୋଇଥିଲା । ପାଶ୍ଚାତ୍ୟ ସାହିତ୍ୟରେ ହୋମରଙ୍କ ଇଲିୟାଡ଼ ମହାକାବ୍ୟ ଏହିପରି ପ୍ରସିଦ୍ଧ ଟ୍ରୟ ଯୁଦ୍ଧର ବୀରତ୍ୱ କାହାଣୀରେ ପରିପୂର୍ଣ୍ଣ । ବହୁ ଯୁଦ୍ଧରେ ଜୟଲାଭ କରି ଓଡ଼ିଶା ସାମ୍ରାଜ୍ୟର ପ୍ରତିଷ୍ଠାତା ରାଜା କପିଳେନ୍ଦ୍ରଦେବଙ୍କ ସମୟରେ ସେହିପରି ସାରଳା-ମହାଭାରତ ରଚିତ ହୋଇ ଓଡ଼ିଆ ସାହିତ୍ୟର ପ୍ରାଣପ୍ରତିଷ୍ଠା କରିଥିଲା । ଯୁଦ୍ଧ ଜୟ ଓ ଯଶୋମୟ ରାଜତ୍ୱ ତଥା ସାମାଜିକ ଅଭ୍ୟୁତ୍ଥାନର ସାକ୍ଷ ଦେବାପାଇଁ ପ୍ରାଚୀନ ଯୁଗର କଳା ସାହିତ୍ୟ ଯେପରି ନିଯୁକ୍ତ ରହିଥିଲା, ଅଧୁନିକ ଯୁଦ୍ଧ ବିପ୍ଳବରେ ମଧ୍ୟ ସେହିପରି କଳା ସାହିତ୍ୟର ଚିନ୍ତାଧାରା ଓ ପ୍ରକାଶଭଙ୍ଗୀ ନବ ନବ ରୂପ ପରିଗ୍ରହ କରିଅଛି ।

ବିଂଶ ଶତାବ୍ଦୀରେ ସଂଘଟିତ ଦୁଇଟି ପୃଥିବୀ ମହା ସମରର ମଧ୍ୟବର୍ତ୍ତୀ-କାଳୀନ ସାହିତ୍ୟକୁ ଏହି କାରଣରୁ ସ୍ୱତନ୍ତ୍ର ଭାବରେ ଅଲୋଚନା କରା ଯାଇଥାଏ । ଏହି ଦୁଇଟି ମହାସମର ପାଶ୍ଚାତ୍ୟ ରଣ କ୍ଷେତ୍ରରେ ତଥା ପାଶ୍ଚାତ୍ୟ ଜାତିମାନଙ୍କ ମଧ୍ୟରେ ମୁଖ୍ୟତଃ ଅବଦ୍ଧ ଥିଲେ ମଧ୍ୟ ସମଗ୍ର ପ୍ରାଚ୍ୟ ଭୂଖଣ୍ଡକୁ ଅଳ୍ପ ବେଶି ପରିମାଣରେ ପ୍ରଭାବିତ କରିଥିଲା । ସେହି ଅନୁପାତରେ ପାଶ୍ଚାତ୍ୟ ସାହିତ୍ୟ ଉପରେ ଏହାର ପ୍ରତିକ୍ରିୟା ଯେତେଦୂର ଦେଖାଯାଏ, ପ୍ରାଚ୍ୟ ସାହିତ୍ୟରେ ତହିଁରୁ ଅବଶ୍ୟ ଅଳ୍ପ । ମାତ୍ର ଏହି ସାମୁହିକ ଯୁଗ ପ୍ରବାହରୁ ପ୍ରାଚ୍ୟ ସାହିତ୍ୟକୁ ସମ୍ପୂର୍ଣ୍ଣ ମୁକ୍ତ କରି ହେବ ନାହିଁ । ପ୍ରଥମ ମହାଯୁଦ୍ଧ ପରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସତ୍ୟବାଦୀ ଯୁଗ ଓ ସବୁଜ ଯୁଗର ଅବିର୍ଭାବ ଏହି ଦୃଷ୍ଟିରୁହିଁ ଅଲୋଚନା କରାଯାଇ ପାରେ ।

ପାଶ୍ଚାତ୍ୟର ଶିଳ୍ପ ବିପ୍ଳବ ଓ ଯନ୍ତ୍ରଯୁଗର ବିବର୍ତ୍ତନ ଫଳରେ ଚିରାଚରିତ ସାମାଜିକ ସଂସ୍ଥା ଅଲୋଡ଼ିତ ହୋଇ ପୁଞ୍ଜିବାଦର ଯେଉଁ ଉତ୍କଟତର ରୂପ ଦେଖା ଦେଲା ଏବଂ ଅର୍ଥନୈତିକ ଓ ରାଜନୈତିକ ଅବସ୍ଥାର ନାନା ସଂଘର୍ଷ ଉପୁଜିଲା, ସାହିତ୍ୟ, କଳା ଓ ଚିନ୍ତା ରାଜ୍ୟରୁ ତାହାକୁ ବିଚ୍ଛିନ୍ନ କରିହେବ ନାହିଁ । ଗୃହେ ଗୃହେ

ଅତ ଖ୍ରିପ୍ରଗତରେ ଯୁଗଯୁଗାବଧି ଚେଳ୍ପତ ଧର୍ମନୀତକୁ ଅଧିକାର କଲା, ରାଜନୀତ ଓ ଅର୍ଥନୀତ ଏବଂ ତାହାର ଉପରେ ପ୍ରତିଷ୍ଠିତ ହେଲା ନବଯୁଗର ସାହିତ୍ୟ । ଧର୍ମ ସଂଗ୍ରାମପରେ ରାଜନୀତହିଁ ହେଲା, ସାହିତ୍ୟର ମୁଖ୍ୟ ଧର୍ମ । ପୁଣି ସେଥି ସଙ୍ଗେ ଅର୍ଥନୈତିକ ସଂଘର୍ଷହିଁ ସାହିତ୍ୟର ପ୍ରଧାନମନ୍ତ୍ର ହୋଇ ଉଠିଲା । ଏହାକୁ ଅବଶ୍ୟ ପାଶ୍ଚାତ୍ୟ ସାହିତ୍ୟ ସମାଲୋଚନାର ପରିମାପକ ରୂପେ ଧରାଯାଏ ।

କିନ୍ତୁ ପ୍ରାଚ୍ୟ ଭୂଖଣ୍ଡ ଉପରେ ପାଶ୍ଚାତ୍ୟ ସମୂହର ରାଜନୈତିକ କିମ୍ବା ଅର୍ଥନୈତିକ ପ୍ରଭାବ ଅଦ୍ୟାବଧି ରହି ଥିବାରୁ, ପୁଣି ସେମାନଙ୍କ ଔପନିବେଶିକ ଆଧିପତ୍ୟରୁ ସକଳ ପ୍ରାଚ୍ୟ ଦେଶ ପୂର୍ଣ୍ଣରୂପେ ମୁକ୍ତ ହୋଇ ନ ଥିବାରୁ ସେହି ପରିମାପକଦ୍ୱାରା ପ୍ରାଚ୍ୟ ସାହିତ୍ୟର ସମାଲୋଚନା ମଧ୍ୟ କରିବାକୁ ହେବ । ଅନ୍ୟ ଗୋଟିଏ କଥା ପାସୋରିଦେଲେ ଚଳିବ ନାହିଁ ଯେ, ପ୍ରାଚ୍ୟ ଉପରେ ପାଶ୍ଚାତ୍ୟର ଏହି ରାଜନୈତିକ, ଅର୍ଥନୈତିକ ବା ଔପନିବେଶିକ ଆଧିପତ୍ୟ ଯୋଗୁଁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ମଧ୍ୟରେ ଘନିଷ୍ଠତର ସମ୍ପର୍କ ଓ ଭାବ ବିନିମୟ ସମ୍ଭବପର ହୋଇପାରିଛି ଏବଂ ସମଗ୍ର ପୃଥିବୀରେ ଐକ୍ୟ ମୈତ୍ରୀ ସ୍ଥାପନର ସୁଯୋଗ ଘଟିଛି ।

ଇଂରେଜମାନଙ୍କ ଆଗମନ ଓ ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ଫଳରେ ଭାରତର ସକଳ ଅଞ୍ଚଳର ସାହିତ୍ୟ ଉପରେ ଇଂରାଜୀ ତଥା ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ପଡ଼ିଛି । ଓଡ଼ିଆ ସାହିତ୍ୟ ଉପରେ ଏହି ପ୍ରଭାବ ରାଧାନାଥ, ଫକୀରମୋହନ ଓ ମଧୁସୂଦନଙ୍କ ସମୟରୁହିଁ ଲକ୍ଷ୍ୟ କରାଯାଏ । ଏକାଧିକ ଗ୍ରୀସୀୟ ଓ ରୋମୀୟ ପୁରାଣ ଉପାଖ୍ୟାନକୁ ରାଧାନାଥ ଯେଉଁଳି ସ୍ୱୀୟ କାବ୍ୟରେ ବ୍ୟବହାର କଲେ, ସେହିଭଳି ଫକୀରମୋହନଙ୍କ ଲେଖନୀରେ ଓଡ଼ିଆ ଗଦ୍ୟ ଏବଂ କ୍ଷୁଦ୍ର ଗଳ୍ପ ବା ଉପନ୍ୟାସ ନୂତନ ଜୀବନ ଓ ନୂତନ ରୂପ ଲାଭ କଲା । ଓଡ଼ିଆ ରଙ୍ଗମଞ୍ଚ ଓ ନାଟକ ରଚନା ମଧ୍ୟ ଏହି ଯୁଗର ଅନ୍ୟତମ କୀର୍ତ୍ତି । ଇଂରାଜୀ କବିତାର ଅନୁକରଣରେ ଅମିତ୍ରାକ୍ଷର ଓ ଚତୁର୍ଦ୍ଦଶ ପଦୀ ସନେଟ୍ ପ୍ରଭୃତି ଛନ୍ଦ ମଧ୍ୟ ଓଡ଼ିଆରେ ରଚିତ ହେଲା । ପୁଣି ଆଧୁନିକ ମୁକ୍ତ ଛନ୍ଦ ବା ଗଦ୍ୟ କବିତା ଉପରେ ପାଶ୍ଚାତ୍ୟ ରୀତିରେ ବଳିଷ୍ଠହିଁ ଅଙ୍କିତ ହୋଇ ରହିଛି । ଅଙ୍କିତ ହୋଇ ରହିଛି, ଆଧୁନିକ ଓଡ଼ିଆ ସାହିତ୍ୟର ଅନୁଭୂତିଶାଳରେ ।

ମୁଦ୍ରା ଯନ୍ତ୍ରର ପ୍ରବର୍ତ୍ତନ ଦ୍ୱାରା ସାହିତ୍ୟ ଯେଉଁଳି ଅଧିକ ପରିମାଣରେ ଗଣମୁଖୀ ହୋଇ ପଡ଼ିଲା, ସେଥିସଙ୍ଗେ ତାହା ଗ୍ରନ୍ଥାକାରରେ ପ୍ରକାଶିତ ହେବା ବ୍ୟତୀତ ଅପର ଏକ ଅଭିନବ ରୂପ ମଧ୍ୟଗ୍ରହଣ କଲା ବିଭିନ୍ନ ସାମୟିକ ଓ ମାସିକ ପତ୍ରିକା ଆକାରରେ । ପୁଣି ସମ୍ବାଦ ପରିବେଷଣ ଲାଗି ସଂବାଦପତ୍ର ମଧ୍ୟ

ପ୍ରକାଶିତ ହେଲା । ସାହିତ୍ୟ ପତ୍ରିକାର ଆବିର୍ଭାବ ଫଳରେ ଏକାଧିକ ଲେଖକ-ଙ୍କର ରଚନା ଏକତ୍ର ପର୍ଯ୍ୟବେକ୍ଷିତ ଓ ତୁଳନାତ୍ମକ ହେବାର ସୁଯୋଗ ମିଳିଲା । ଏହି ସକଳ ଆଧୁନିକତା ପାଶ୍ଚାତ୍ୟର ଅନୁକୃତ ମାତ୍ର । ତେଣୁ ଆଧୁନିକ ସାହିତ୍ୟର ସମାଲୋଚନା ପାଶ୍ଚାତ୍ୟ ଦୃଷ୍ଟି କୋଣରୁ ହେବାହିଁ ସ୍ୱାଭାବିକ ଏବଂ ସାମୟିକ ପତ୍ର ପତ୍ରିକା ସମାଲୋଚନା ଓ ତୁଳନାର ଅନ୍ୟତମ ମାଧ୍ୟମ ଭାବରେ ଅଛି ହୋଇଛି ।

ରାଜନୈତିକ ବା ଅର୍ଥନୈତିକ କାରଣରୁ ଯେଉଁସବୁ ନୂତନ ସମସ୍ୟା ଦାବୀ ଓ ଅଧିକାର ସମାଜରେ ମୁଣ୍ଡ ଟେକିଲା, ତାହା ସମ୍ବାଦ ସାହିତ୍ୟରେ ପ୍ରକଟିତ ହେବା ସଙ୍ଗେ ସଙ୍ଗେ ଗଳ୍ପ, ଉପନ୍ୟାସ, ନାଟକ, କବିତାଦିର ପ୍ରଧାନ ବିଷୟବସ୍ତୁ ହୋଇପଡ଼ିଲା । ନାରୀ ପୁରୁଷ, ପ୍ରେମିକ ପ୍ରେମିକା, ସମାଜ ପରିବାର, କିମ୍ବା ବାଳକ ମୂକ ଅମାନଙ୍କର ସମସ୍ୟା ଓ ସଂଘର୍ଷ ସାହିତ୍ୟ କ୍ଷେତ୍ରରେ ନବ ନବ ଅର୍ଥ ବହନ କରି ଶବ୍ଦାର୍ଥ ବାକ୍ୟରେ ଅନେକ ଓଲଟ ପାଲଟ ସୃଷ୍ଟି କଲା ଏବଂ ସୃଷ୍ଟିକଲା, ବିଭିନ୍ନ ବାଦ ବିବାଦର ପରିସର । ପୁଞ୍ଜିବାଦୀ, ବାସ୍ତବବାଦୀ, ବ୍ୟକ୍ତି-ବାଦୀ, ରହସ୍ୟବାଦୀ ପ୍ରଭୃତି ବିଭିନ୍ନ ଆଖ୍ୟାରେ ସାହିତ୍ୟିକମାନେ ତଥା କାଳକାରମାନେ ଅଭିହିତ ହେଲେ, ଠିକ୍ ଯେ ଭଳି ରାଜନୀତି କ୍ଷେତ୍ରରେ ବିଭିନ୍ନ ମତବାଦର ସ୍ଫୁରଣ ହୋଇଛି ଓ ପରସ୍ପର ମଧ୍ୟରେ ବିରୋଧିତା ଲାଗି ରହିଛି । ତେଣୁ ଏହି ଦୃଷ୍ଟିରୁହିଁ ପ୍ରାଚୀନ ଯୁଗରୁ ଅଦ୍ୟାବଧି ସାହିତ୍ୟର ଆଧୁନିକ ସମା-ଲୋଚନା ହେବା ବିଧେୟ । ଏହିଦୃଷ୍ଟି କୋଣରୁହିଁ ପ୍ରାୟ ପାଞ୍ଚଶହ ବର୍ଷ ପୂର୍ବେ ମହାକବି ସାରଳାଦାସ ବିଲଙ୍କା ରାମାୟଣରେ ସୀତାଙ୍କ ଦ୍ୱାରହିଁ ଫୁଟାଇ ଓଡ଼ିଆ ନାରୀତ୍ୱକୁ ଯେଉଁ ଉଦ୍‌ବୋଧନ ଦେଇ ଯାଇଛନ୍ତି, କିମ୍ବା ତାଙ୍କପରେ କବି ବଳରାମ ଦାସଙ୍କର ଲକ୍ଷ୍ମୀପୁରାଣ ବା କବି ଦାମୋଦରଙ୍କ ପୁରୁଷୋତ୍ତମ ଦେଉଳ ତୋଳାରେ ବ୍ରାହ୍ମଣ ଚଣ୍ଡାଳ ବା ବ୍ରାହ୍ମଣ ଶବର ଭେଦକୁ ଅସ୍ୱୀକାର କରିବାର ଶେଷରେ ଅଷ୍ଟାଦଶ ଶତାବ୍ଦୀରେ ଭୀମଭୋଇଙ୍କ ରଚନାରେ ଓ କାର୍ଯ୍ୟତଃ ଜଗନ୍ନାଥ ମନ୍ଦିରରେ ଅସ୍ପୃଶ୍ୟମାନଙ୍କ ପ୍ରବେଶଲାଗି ଯେଉଁ ଅଭିଯାନ ହୋଇଛି, ସେଥିସଙ୍ଗେ ଫକୀର ମୋହନଙ୍କ "ଛମାଣ ଆଠଗୁଣ୍ଠ"ର ଦାବୀ ତଥା ଆଧୁନିକ ଶ୍ରେଣୀ ସଂଘର୍ଷ ଓ ବିପ୍ଳବର ପକ୍ଷପାତୀ ସାହିତ୍ୟକୁ ବିଚାର କରିବାକୁ ହେବ ।

ସର୍ବଶେଷରେ ବିଚାର କରିବାକୁ ହେବ, ଅମ୍ଭମାନଙ୍କ ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ ସାହିତ୍ୟକୁ; ତାହା କେଉଁ ପରିମାଣରେ ସକଳ ବିଭେଦ ଓ ଫାଙ୍କ ମଧ୍ୟରେ ଜଗତର ଏକତା, ମିଳନ, ଶାନ୍ତି ଓ କଲ୍ୟାଣର ଛନ୍ଦ ଧ୍ୱନିତ କରି ବିଶ୍ୱସାହିତ୍ୟ ସଙ୍ଗେ ତାଳ ପକାଇ ଅଗ୍ରଗତି କରୁଛି ।

( ଆକାଶ ବାଣୀ, କଟକଙ୍କ ସୌଜନ୍ୟରୁ )

---






# ସତେ କି ଆସିବ



ଶ୍ରୀ ଗୋପାଳ କାନୁନ୍‌ଗୋ

ଦୈତ୍ୟ ସମ ଏ ସୌଧର ଛାଇତଳେ
ଶୁଭେ ଅଶାନ୍ତର କେଉଁବାଣୀ,
ପୁଂଜିତ ତହିଁ କାଙ୍ଗିଳ ବେଦନା—
ଜଗେ ଉଦ୍‌ବେଗ ମନେ
ଗର୍ଭର ଏ କଣ ଗନ୍ଧ !
ଶ୍ମଶାନ ଦେହେ
ଅଗାଢ ଭସ୍ମେ
ଅଗ୍ନି ଜଳିଛି ମାତ୍ର ।

( ୨ )

ଶୋଣିତର ଧାର ଶୁଖିନାହିଁ
ପଥପରେ
ତାପରେ ଝେଙ୍କୁଛି ଶିଖା
ତୁଷାର ଧବଳ ସଉଧମାଳାର
ବିପୁଳ ବକ୍ଷ ଦେହ
ନାହିଁ ତା ଶୋଚନା ଲେଶ
ହଜିଯାଏ ତହିଁ ମାନବ ରୁଦ୍ଧ—
ବେଦନାର ଅବଶେଷ ।

( ୩ )
କୋଟିକ ଉପରେ
ଗୋଟିକର ଅଣପଣ
ବନାଶିବା ଲାଗି ଯେହ୍ନେ—
କାନ୍ଦିଗଲେ ତେଜି ଘର ସଂସାର
—ମୁକ୍ତିର ଅହ୍ୱାନେ
ନ ଦେଲ କି ତେବେ ପୂର୍ଣ୍ଣ ଅଞ୍ଜୁଳି
ଆପଣାର ଲକ୍ଷ ଦାନେ ?
( ୪ )
ଦରିଦ୍ର ଅଳ ମିଥ୍ୟାର ଘର ତୋଳେ
ଧନୀ ଭୁଲେ ବଂଶଗୃରେ—
ନୂତନ ଯୁଗର ଅବାହନ ଏକି ?
କେ ନୁହେଁ କାହାଠୁଁ ସାନ
ଘୋଷେ ଅନାଥନ ସ୍ୱପ୍ନ
ଘୋର ଦୁର୍ଦ୍ଦିନେ ମୁକ୍ତି—ପ୍ରଦୀପ
ଲଭି ଆସେ ଗୃହେଁ ଗୃହେଁ ।
( ୫ )
କାହିଁରେ ଜୀବନ ?
—ଶାନ୍ତ ଧରଣୀ ତଳେ
ଶୂନ୍ୟ ଏଦଣଦଣ
ବ୍ୟଥିତ ଅତ୍ମା କରଇ ଦାହନ
—ଉର୍ଦ୍ଧ୍ୱେ ଶୂନ୍ୟେ ସ୍ପର୍ଦ୍ଧି
କାରୁଣ୍ୟ-ଭରା ଗୀତ
—ଅଜି ଥରେ କିବା ମୁକ୍ତିସମର
—ଅନଳ ଉଠିବ ତାତ ।
( ୬ )
ସବୁଜ ଧରଣୀ ଉତ୍ସବ ଲାଗି କିଏ
ଏ ପଥେ ଅସିଛ କହ;
ଯା ଗୀତେ ଫୁଟିବ ଜୀବନ-ପଦ୍ମ
ନବୀନ ଅଲୋକ ଲାଗି
ସତେ କି ଅସିତ-ଦାନେ
ସକଳ ଦୈନ ଲଭିବ ଯାତନ
ମୁକ୍ତି ଏ ଦାନଖାନେ ।

( ପଥସ୍ପୃହା )



# ସନେଟ୍



ସମୟର ତେଜ ଯେବେ ତୁମର ଏ ବେଣୀର ତେଜରେ
ଦିନେ ଆସି ବୋଳି ଦେବ ଫେଣ ଆଉ କୁହୁଡ଼ି ଜାଲର
ପୋଛିଦେବ କପାଳରୁ ଜହ୍ନ ଆଉ ତାରାର ଆଲୁଅ
ଝରିଦିନ ମରିଯିବ ଫୁଲଗଛ ତୁମର ଦେହର
ସେ ଦିନ ଏ ପୃଥିବୀର ସୀମାନ୍ତରେ ଛିଡ଼ାହୋଇ ତୁମେ
ଦେଖିବ ଏ ଆକାଶରେ ଅଜାଡ଼ର ଗୁଳ୍ପାଏ ମେଘ
ଯାହା ଯେତେ ଝଡ଼ିଯାଏ ଗୋଟି ଗୋଟି ଦିନ ଯେତେଯାଏ
ଆଜନ୍ମର ସେ ସବୁର କିଛି ହେଲେ ରହେନାହିଁ ଦାଗ ।
ସେ ଦିନ ମୁଁ ଥିବ ଯଦି ଥିବ ମୋର ଆଶା ଓ ନିରାଶା,
ଗଢ଼ିବାର ମୋହ ଥିବ ଭାଙ୍ଗିବାର ଥିବ ଅପଯଶ,
ଦେହ ମୋର ଥିବ ପଡ଼ି ସମୟର ନଈବାଲି ପରେ,
ମନର ଚେତନା ଥିବ ଥିବ ଏକ ସୀମିତ ଆକାଂକ୍ଷା
ସେ ଦିନ ଏ ପୃଥିବୀର ସଙ୍କୀର୍ଣ୍ଣ ପରିସର ବ୍ୟାପି
ମୁଁ ତୁମକୁ ଦେଖାଇଥିବି ଅଜାଡ଼ର ତଥାପି ତଥାପି ।

ଅଧ୍ୟାପକ
ଗୁରୁପ୍ରସାଦ
ମ
ହା
ନ୍ତି



# ରାତି

ଅଧ୍ୟାପକ
ବି
ଭୂ
ଦ
ତ୍ତ
ମି
ଶ୍ର

ରାତିର ଶିକୁଳିରୁ ଏ ଦୁର୍ଗନ୍ଧ ନୀଳ ଜହ୍ନର ଲହରୀ
ମେଘର ବୋଇତ ଭାସେ ପାଲଟାଣି ଆକାଶେ ଆକାଶେ
କୁହୁଡ଼ିର ଧୂଆଁ ତଳେ ଝାପ୍ସା ଦିସେ ଦୂର କୋଠାବାଡ଼ି
ଜଳିବା କେଉଁଠି କରେ ଦିଳ୍ ଦିଳ୍ ରାସ୍ତାର ଆଲୁଅ ।
ଜଣେ ଅଧେ କିଏ ଅବା ଯାଏଆସେ କୁଆଡ଼େ କେଜାଣି
ଥରେ ଥରେ ସାଇକେଲ ଘଣ୍ଟି ଶବ୍ଦ, ରିକ୍ସାର ଆବାଜ୍
ପୁଣି ସବୁ ଶୂନ୍‌ଶାନ୍, ଚୁପ୍‌ଚାପ୍ ନୀରବ ନିସ୍ତେଜ
ରାତିର ନିଃଶ୍ୱାସ ମିଶେ ପବନରେ ଶୀତଳ କରୁଣ ।
ପାଖର ବସ୍ତିରୁ କା'ର ପାଟି ଶୁଭେ. କବାଟକୁ ଖୋଲିବା'ର ଧକା
ଅସ୍ପଷ୍ଟ ଗୁଞ୍ଜନ ଶୁଭେ କେତେବେଳେ ନିଦୁଆ ଆବାଜ
କିଏ ବସି ତନ୍ଦ୍ରା ଘୋଷେ, ଖଣ୍ଡିକାଏ ପବନରେ ଭାସେ
କେତେବେଳେ ଶୀତରାତ ଶେଷଥର କରି ନେଉଛାଏ ।
ସ୍ୱପ୍ନଭାଙ୍ଗେ ଗୁରୁଆଡ଼େ କୋଳାହଳ ଉଚ୍ଛୁଳ କାକର
ଆଠ'ଟା ବାଜିବା ପାଇଁ ମାତ୍ର ଆଉ ଦଶଟି ମିନିଟ୍ ।



ହେ ଗୋଲାପ, ସାଜ ଯେନା ତମ ପେନ୍ସ ପାଖୁଡ଼ା ଗହଳେ
ମୁଁ କାହୁଁ ଭଲପାଏ ତମ ମୁହଁ ଆଖି ଆଉ ଚୁଲ୍
ନାଲି ହଳଦୀ ଓ ଅଳ୍ପ ଗୋଗସିକ୍ତ ପାଦରେ ଅଳତା
ଲମ୍ବ ନଖର ପରଶ, ଲାଜ ଆଉ ଝାଳଗନ୍ଧ ଖାଲି ।
ମତେ ଭଲଲାଗେ ତମ ମୁକୁଳିତ କେଶ ଅବା ପତିତ ରୁମାଲ
ଧୀର କଥା ଶଂଖା ରୁଣୁ ଝୁଣୁ ଆଉ କୁଙ୍କୁମ ବିନ୍ଦୁଏ
ପୁଣି କେବେ କେବେ ଅତି ଭଲଲାଗେ ବ୍ରଣଯୁକ୍ତ ନାଲି ଓଠ
ଅଦଳନିଆ ଗୈରିକର୍ ତମ ସ୍ମିତ ହସରୁ ଟିକିଏ ।
ଦୁଷ୍ଟ କୁହ ବୋଲି, ଅଭିମାନେ ମୁହଁଟେକି ବିରକ୍ତ ନକଲେ
ସହରେ ନଗୁଞ୍ଜି ତମ ଗଭାମୂଳେ ନିଷ୍ଠିଆ ସ୍ନେହ
ଦରଦ ଖବରେ କାହିଁ ଅଟେଗୋ ତମ ମୁହଁଟି ଝାଉଁଳେ
ବାଧାର ପାହାଡ଼ ସେପାଖରେ ତାଳ କାହିଁ ଶତ ହତାଶିଆ କୋହ ।..
ହେ ଗୋଲାପ, ଜୀବନ ବୃନ୍ତେ କ୍ଷଣେ ଲାଗେ ଯଦି ମୋ ମନରମଣୀର
ଛାଇ ହଳଦିଆ କି ରଙ୍ଗ, କାହିଁ ପାଅ ଏତେ ଗଭୀର ପରାଗ ..!!

**ଥେସିସ୍**

ଏସ୍. ମଙ୍ଗରାଜ,
ଦ୍ୱି. ବ.



## ଅଭିଯୋଗ

**ଶ୍ରୀମତୀ କୁନ୍ତଳା କୁମାରୀ ରାଉତରାୟ**

ଯେତେ ବି କହିଲେ ମତ-ନାରୀ ପ୍ରତି ସଦା ଅବିଶ୍ୱାସ
ତମର ପୁରୁଷ ଜାତିଟା ଶତ ଦୋଷାରୋପ କରେ
ମୁଁ କହିବି ସୁବିଧା ବାଦୀ ତମେମାନେ ଅତି ସ୍ୱାର୍ଥପର
ଭଲପାଅ ବନ୍ଦ କରିବାକୁ ଖାଲି ଦାସତ୍ୱ ଭିତରେ ।
ସ୍ନେହ ଶ୍ରଦ୍ଧା ଦାନ କର ବୋଲି କାହିଁ ଗର୍ବ କର ଏତେ
କହିକି ପାରିବ ତମେ ଭଲ ପାଅ କାହା ଶାନ୍ତି ଲାଗି
ଲୁଟି ନେଇ ଅଖି ମନ ଓ କଳମ ସ୍ୱାଧୀନତା ଯେତେ
ଦାସ୍ତ କରନ୍ତିକି ଲାଜ ସଂକୋଚ ଓ ନାରୀର ସବୁଙ୍କଠୁ ମାଗି ।
ଅଭିଯୋଗେ ଅପରାଧ ବିନା, ଭୁଲ୍ କୁହଁନିକି ତମେ
ନିଷ୍ଠୁରେ ଆଘାତ ହାଣିନିକି ଅପବାଦ ନରକ ଭିତରେ
ନରମି ଯାଏନି ପ୍ରାଣ ଦୁଃଖ ଆଉ ଅଶ୍ରୁ ନିବେଦନେ
ମୁହୁର୍ତ୍ତିକେ ପାଦେ ଦଳନିକି ତକ୍ତ ହୋଇ ତମର ମନରେ ।
ତମ ଜାତିର ଭୁଲଭାଲି ପ୍ରଶଂସା ଓ ଅଶକ୍ତି ଯେତେକ
ମନେନାଏ ମନ୍ତ୍ର ଅଭିଶାପ-ନିଅ ଫେରାଇ ସେତିକ...!!



# ପୃଷ୍ଠାଏ

ଶ୍ରୀ ଜେନାମଣି ନରେନ୍ଦ୍ର କୁମାର



ମହମବତୀର ଜଳିବାରେ ଆଭିଜାତ୍ୟ ଅଛି । ଜହ୍ନ ରାତର ହାଲୁକା ଅନ୍ଧାରରେ ମହମବତୀ ଜଳୁଛି । ହାତୀ ଦାନ୍ତର କ୍ଷୁଦ୍ର ମୀନାର ଉପରେ ଶିଖା ଦୋହଲୁଛି ।

ଏଇଠି ଏକ ବିଲାତୀ ସ୍ୱପ୍ନର ଦେଶ—ହୀରକ ଖଚିତ ବତୀ ଦୋଳାରେ ଉଜଳ ଉଜଳ ମହମବତୀର ମେଳା । ଅନ୍ଧାରର ବସ୍ତ୍ର ଭିତରେ ପାଣ୍ଡୁର ଦାଢ଼ୀ ଅଜ ବୟସର ପକ୍ୱତା ନେଇ ଅନ୍ୱେଷ ଜଳାଇ ଜଳାଇ ଆସୁଛି ମାଳୀ ·· ଏଇ ପ୍ରାସାଦର ବତୀ ଦୋଳା ସବୁ ଆଲୋକିତ କଲାବେଳେ ତାର ସ୍ମୃତିରେ ଢେଉ ଖେଳୁଛି କେତେ ଯୁଗର ବାଦଶାହୀ ବ୍ରୁନସ୍ୱାଦର କାହାଣୀ···

ସଜ୍ଜିତ କକ୍ଷର ପ୍ରାଚୁର୍ଯ୍ୟ ଭିତରେ ଶୋଇ ରହିଛି ଅଲ୍ସାଳୀ ରାଜକୁମାରୀ··· ଶାମ୍ପେନ୍ ପାନ ପାତ୍ରରେ ଥାପିଦେଲା ଭଳି ସ୍ନିଗ୍ଧ ବକ୍ଷ··· ମନରେ ସେଇ ପ୍ରତ୍ୟୁଷର ଛନ୍ଦ, ଚପଳ କାହାଣୀର ନୂତନ ଆବେଶ—ଭୂରି ଭୋଜନରେ ଉଦର ସ୍ଫୀତ କରି ଦଶ ଘଣ୍ଟାର କ୍ରମାଗତ ନିଦ୍ରା ପରେ ପୁଣି ଖାଦ୍ୟ ଖୋଜୁଛି ସ୍ଥୂଳକାୟ ଲେଭ୍ରା··· ମନର କ୍ଷୁଧା ବଳାର ଯାବତୀୟ ବ୍ୟଞ୍ଜନା ସତ୍ତ୍ୱେ, ପାଶବିକ—ନିହାତି ସ୍ଥୂଳ ଏବଂ ଲୋମଶ ।

★ ★ ★ ★

ଦର୍ପଣରେ ନିଜର ପ୍ରତିବିମ୍ବକୁ ଅନେକ ସମୟ ଧରି ଚାହିଁ ରହି ଗାୟତ୍ରୀ ଭାବୁଥିଲା, ତା ମନର ସବୁଠ ଭିତରେ କରୁଣ ଆତ୍ମନିବେଦନର ଛାପ ଏବେ ଅତ୍ୟନ୍ତ ସ୍ପଷ୍ଟ ହୋଇ ଉଠିଛି ।

ମହମବତୀ ଜଳୁଛି··· ସାମାନ୍ୟ ବଙ୍କା ହୋଇ ରହି ଯାଇଥିବାରୁ ତେଲର ଟୋପା ଟୋପା ତଳେ ଜମାଟ ବାନ୍ଧୁଛି । ମହମବତୀର ଜଳିବାରେ

ଅଭିଜାତ୍ୟ ଅଛି । ପ୍ରେୟସୀ ଡେସ୍‌ଡିମୋନାଙ୍କୁ ହତ୍ୟା କରିବାକୁ ଯାଇ ଅଥେଲୋ ଲିଭେଇ ଦେଉଛି ମହମବତୀର ବହ୍ନେଃଶିଖାକୁ—ଏ ଆଲୋକ ଲିଭୁ··· ସେ ଆଲୋକ ବି ଲିଭୁ । ମହମବତୀ··· ମହମବତୀ ପ୍ରତି ଗାୟତ୍ରୀର ମମତା ଅଛି ।

ଗାୟତ୍ରୀ ଚାହିଁଛି ନିଜର ପ୍ରତିବିମ୍ବକୁ । ଦୁନିଆରେ ନିଜ ମୁହଁକୁ ମଣିଷ ନିଜେ ବେଶୀ ସମୟ ଚାହେଁ ବୋଧହୁଏ । ଦର୍ପଣ ଜରିଆରେ ମଣିଷ ଆପଣାର ଅତୁଳ ପ୍ରିୟ ହୋଇ ପାରେଚି । କିନ୍ତୁ ଗାୟତ୍ରୀ ନିଜ ପ୍ରତିବିମ୍ବକୁ ଯେତିକି ଦେଖିଛି, ନିଜ ପ୍ରତି ତାର ବିତୃଷ୍ଣା ସେତିକି ବଢ଼ିଛି ।

ଦାନ୍ତଗୁଡ଼ାକ ଅସମାନ—ସାମନା ଦୁଇଟି କିମିତି ଅସ୍ୱାଭାବିକରୂପେ ବଡ଼ । ମୁହଁର ରଙ୍ଗ ଏବେ ବି କଳା ରହିଛି—ପିଲାଦିନର ରଙ୍ଗ ଯୌବନ ଆସିଲେ ଠିକେ ବଦଳିବ ବୋଲି ଯେଉଁ ଆଶା କରା ଯାଉଥିଲା, ତାହା ବୃଥା ହୋଇଛି । ଆଖି ଦୁଇଟା ଏତେ ସାନ କିମିତି ହେଲା··· ବାଳଗୁଡ଼ାକ ମଥା ଉପରୁ ତଳକୁଆଡ଼େ ଉପୁଡ଼ି ଉପୁଡ଼ି ଚାଲିଛି—ଯେମିତି···

ନିଜକୁ ନିଜେ ଭଲ ପାଇ ପାରେନି ଗାୟତ୍ରୀ, ଆଉ ଅନ୍ୟ ଜଣେ ତାକୁ କିମିତି ଭଲ ପାଇବ ? ମନରେ ଉଠୁଥିବା ଝଡ଼ ଯାଦୁକରର ଆଦେଶ ପରି ଥମି ଆସେ ଏଇ ଗୋଟାଏ ପ୍ରଶ୍ନରେ ।

ଗାୟତ୍ରୀ ଭୂଗୋଳ ପଢ଼ୁଛି—ଟ୍ରାନ୍ସ ସାଇବେରିଆ ରେଳପଥରେ ଯାତ୍ରୀ ପିଟର ପେଟ୍ରୋଗ୍ରାଡ଼ରୁ ଭ୍ଲାଡିଭଷ୍ଟକ୍··· ବାଟରେ ସାଇବେରିଆର ବରଫ ଝଡ଼ ଭିତରେ ଲମ୍ବା ଲମ୍ବା ମାଲ ବୁହା ଗାଡ଼ିର ସିଟି··· ବେଶ୍ ଅନୁମାନ କରାଯାଏ ।

ମହମବତୀର ଶିଖା ଦୋହଲୁଛି । ଝରକା ଦେଇ ଦେଖାଯାଉଛି ଜ୍ୟୋସ୍ନାଭିଜା ସହରର ଏକ ଅଂଶ । କୋଠା, ବସ୍ତି, ନଡ଼ିଆ ଗଛ ଏବଂ ଚିମ୍ନୀ—ଜହ୍ନ ରାତିରେ ଏମାନେ ଶାନ୍ତ ଶିଷ୍ଟ ଶିଶୁଟି ପରି ଜୁଳୁ ଜୁଳୁ ଚାହିଁଛନ୍ତି ।

ପବନ ଆସୁଛି··· ଆରାମଦାୟକ ଭାବେ ଥଣ୍ଡା ପବନ··· ଗାୟତ୍ରୀର ଭାଇ ଏବଂ ଭାଉଜ ରଥଯାତ୍ରା ଦେଖିବା ପାଇଁ ପୁରୀ ଚାଲି ଯାଇଛନ୍ତି । ଭାଇଙ୍କ କୋଠରୀରେ ବୁଢ଼ୀ ଚାକରାଣୀଟି ଶୋଇଛି··· ତା' ଘୁଙ୍ଗୁଡ଼ି ଅଗଣା ଟପି ବାହାର ପଟ ଘରକୁ ଶୁଭୁଛି । ଗାୟତ୍ରୀ ତା' କୋଠରୀରେ ବସି ଭୂଗୋଳ ବହି ଓଲଟାଉଛି—ରାତିର ନୀରବତା ଭିତରେ ବହି ଓଲଟେଇବା ଶବ୍ଦ ବେଶ୍ ଶୁଭୁଛି ।

କଲେଜରେ ଗାୟତ୍ରୀର ଏଇଟା ଦ୍ୱିତୀୟ ବର୍ଷ । ଗାୟତ୍ରୀର ଜୀବନରେ ଏଇଟା ଉନବିଂଶ ବର୍ଷ । ରକ୍ତ ମାଂସର ପ୍ରଚୁର ଉନ୍ମାଦନା ନେଇ ଗାୟତ୍ରୀ ଭୂଗୋଳ ପଢ଼ୁଚି । ବାହାରେ ତୃତୀୟ ପ୍ରହରର ରାତ୍ରି ଆଗେଇ ଚାଲିଚି···

ଗାୟତ୍ରୀ ଆଜି ବେଶ୍ ଏକୁଟିଆ । ଜୀବନରେ ଅନେକ ସମୟରେ ଏମିତି ବିଶ୍ୱସ୍ତଭାବେ ଏକୁଟିଆ ରହିବାକୁ ଗାୟତ୍ରୀକୁ ସୁଯୋଗ ଦିଆଯାଏ, ଯାହା ଅନ୍ୟ ଯୁବତୀ ଝିଅଙ୍କୁ ମିଳିବା କଷ୍ଟକର ।

ଗାୟତ୍ରୀ ହସିଲା । ଦର୍ପଣ ଭିତର ଦେଇ ପ୍ରତିଫଳିତ ହୋଇ ଉଠିଲା ଗାୟତ୍ରୀର ହସ···ଇସ୍, କି ଭୟଙ୍କର ! ଗାୟତ୍ରୀର ହସ ଥମିଆସିଲା ଆପେ ଆପେ । ଗାୟତ୍ରୀ ହସିଲା ନିଜର ନାସିକା ପାଇଁ । ସେ ନାସିକାକୁ ସଭିଏଁ ବିଶ୍ୱାସ କରନ୍ତି । ତାକୁ ଅପଚାର କରିବାକୁ କେହି ଆସିବେନି । ତେଣୁ ଅବିଶ୍ୱାସର ପ୍ରଶ୍ନ ନାହିଁ ।

ମଣିଷ ଫୁଲକୁ ଭଲପାଏ । ଘୃଣାକରେ ସେ ପତ୍ରକୁ, ଯେଉଁ ପତ୍ର ନିଷ୍ପ୍ରାଣ, ପୀତାଭ—ଝଡ଼ିଗଲା ପତ୍ର ହେ, କିନ୍ତୁ ବରଂ କିଂଶୁକ ଫୁଲ ଗନ୍ଧହୀନ ହେଉ, କିନ୍ତୁ ତାହା ସୁନ୍ଦର ହୋଇଥିବ······ ସୌନ୍ଦର୍ଯ୍ୟହିଁ ସତ୍ୟତା ।

ଗାୟତ୍ରୀର ପ୍ରତ୍ୟେକ ପେଶୀରେ ପ୍ରଚୁର ଉନ୍ମାଦନା । ହୃଦୟରେ ତରଳ ଅନୁରାଗ । ସାଥୀର ଅଭାବ ଉପନ୍ୟାସର ପୃଷ୍ଠା ଏବଂ ଚଳଚିତ୍ରର ପରଦା ଉପରୁ ଜାଗି ସହପାଠିନୀମାନଙ୍କ ଆଲୋଚନା ଭିତରେ ଦାନ୍ତ ଉଠିଚି ଗାୟତ୍ରୀ ଏକୁଟିଆ······

ଏ ପୃଥିବୀରେ ସୁନ୍ଦରହିଁ ସତ୍ୟ । ଏ ପୃଥିବୀ ସୁନ୍ଦର । ଏ ସୁନ୍ଦର ପୃଥିବୀକୁ ଛାଡ଼ି ମଣିଷ ମରିପାରେ ନାହିଁ । ନିଜେ ଗାୟତ୍ରୀ ମେ ସୌନ୍ଦର୍ଯ୍ୟର ସ୍ପନ୍ଦନ ଅନୁଭବ କଲାବେଳେ ଥରେ ଥରେ ଭାବେ, ଅସୁନ୍ଦର ବିଭୂତି ବାନାର୍ଜୀର ପୌରୁଷ ନାହିଁ ବୋଲି ଲୋକେ ଯାହା କହନ୍ତି, ତାହା ମିଛ ନୁହେଁ ।ଏବଂ··· ଗାୟତ୍ରୀ ପ୍ରତି ଶ୍ରଦ୍ଧାରେ ଦିଆ ହୋଇଥିବା ବଙ୍କାଟି ପ୍ରଦୀପ୍ତର କଳ୍ପିତ ଉପାଧି "କୋଇଲା ମହାଦେଈ"····· ମିଛନୁହେଁ ।

"କୋଇଲା ମହାଦେଈ" ଗତିର ନୀରବତା ଭିତରେ ଭୂଗୋଳ ପଢ଼ୁଛନ୍ତି । ମହମ ବତୀର ଶିଖା ନାଚୁଚି । ବୃଦ୍ଧିଶୃଙ୍ଖଳାରାଣୀର ଘୁଙ୍ଗୁର ଶୁଭୁଚି । ନୀରସ ଜୀବନରେ ମୁଣ୍ଡଟେକୁଚି ଯୁଗ ଯୁଗର କ୍ଷୁଧା ।

ସାଥୀମହଲରେ ଆଲୋଚନା ହୁଏ ଅନେକ କଥା କଳା, ସୌନ୍ଦର୍ଯ୍ୟ ଓ ଉପଭୋଗ ଉପରେ ଘଣ୍ଟା ଘଣ୍ଟାର ସଂକୁଚିତ ଆଲୋଚନା । ପୁରୁଷ ପିଲାମାନଙ୍କର

ଅତ୍ୟନ୍ତାମି ଉପରେ ମନ୍ତବ୍ୟ ଦିଅନ୍ତିଏ । କିନ୍ତୁ ଗାୟତ୍ରୀ ସେ ସବୁ ବିଶେଷ ପ୍ରଶଂସିତ କରିପାରେନା । ସବୁକିଛୁ ଉପରେ ଜୋର୍ ଦେଇ କହିବାକୁ ହେଲେ ଯଥେଷ୍ଟ ଜ୍ଞାନ ଥିବା ଦରକାର, ଅଭିଜ୍ଞତା ଥିବା ଦରକାର । ଗାୟତ୍ରୀର ବିଶେଷ ଅଭିଜ୍ଞତା ନାହିଁ । କେବଳ ପାର୍ଟି ମିଟିଂରେ ଯୋଗଦେବା ଛଡ଼ା ଗାୟତ୍ରୀ ଉପରକୁ ସହପାଠୀ ମେଳରେ କେବେ କିଛି ଦାୟିତ୍ୱ ଦେବାର ଦୃଷ୍ଟାନ୍ତ ନାହିଁ ।

ଗାୟତ୍ରୀ ସିନେମା ଦେଖେ ନାହିଁ—ସିନେମା ଦେଖିଲେ ତାକୁ ବାନ୍ତି ଉଠାଇଲା ପରି ଲଗେ । ପାର୍କ ବା ରାସ୍ତାରେ ସେ ବୁଲିବାକୁ ଭଲପାଏନା—କେତେ ପ୍ରକାର ଅମ୍ଳ ହଣୀୟ ମନ୍ତବ୍ୟ ତା ଉପରେ ଦିଅନ୍ତିଏ ।

କେଉଁ ଏକ ପୁରୁଣା ଉପନ୍ୟାସର କୁତ୍ସିତା ନାୟିକା ପରି ଗାୟତ୍ରୀ ଜୀବନର ଏ ସମସ୍ୟା—କିଛି ନୂତନତା ନାହିଁ, ତେଣୁ ଟିକିନିଖି ସବୁ ମାପିଚୁପି ଦେଖିବାକୁ ଗାୟତ୍ରୀର ଉଦ୍‌ବେଗ ନଥାଏ । ଏମିତି ଗୋଟାଏ ଜୀବନ······ ଗଡ଼ ଗଡ଼ ଚୁଲେ ଯନ୍ତ୍ରପରି । କେବଳ ବେଳେ ବେଳେ ଫୁଲ୍ ଫୁଲିଆ ପବନର ଏ ପ୍ରାଦୁର୍ଭାବ, ଦେହର ଏ କମ୍ପନ, ପେଶୀ ଗୁଡ଼ାକର ଏ ଅଳସ୍ୟ······ବାଃ, ଅସହ୍ୟ । ମଣିଷ ଗୋଟାଏ ଜୀବ ହୋଇ ବଞ୍ଚି ରହିବାର ସମସ୍ୟା ଅନେକ ଥିଲେ ସୁଦ୍ଧା ସେ ଯନ୍ତ୍ର ହେବାକୁ ଚାହେଁନା । ଜୀବନର ସ୍ପନ୍ଦନରେ କିଛି ଗୋଟାଏ ଅଛି । ତାକୁ ଯୁକ୍ତିରେ କାଟି ହୁଏନା । ସେଇ "କିଛି ଗୋଟିଏ' ଯେତେବେଳେ ଗାୟତ୍ରୀକୁ ଦୋହଲେଇ ଦିଏ । ଗାୟତ୍ରୀ ଦର୍ପଣରେ ନିଜ ମୁହଁକୁ ଚାହେଁ । ତାହାର ଯାଦୁକରୀ ସ୍ପର୍ଶ ପାଇଲା ଭଳି ସବୁକିଛି ଥପି ଅସେ ଅପେ ଅପେ ।

ଗାୟତ୍ରୀର ଶିକ୍ଷା ଅଛି । ସେ ଯୁକ୍ତି ବଳରେ ନିଜ ମନକୁ କିଛି ପରିମାଣରେ ଆୟତ୍ତ କରିପାରେ । ଗାୟତ୍ରୀ ମାଂସର ପିତୁଳା ନୁହେଁ—ତା'ର ହେତୁ ଅଛି ।

କିନ୍ତୁ କ୍ଷୁଧା ଏବଂ କୌତୁହଳ ଯେଉଁଠି ଏକାଠି ପ୍ରବଳ ହୋଇ ଉଠନ୍ତି, ସେଠି ମଣିଷ ନିଜର ମମତା ହରେଇ ବସେ । ଗାୟତ୍ରୀ ନିଜର ଯୌବନ ପାଇଁ ତେଣୁ ଦୀର୍ଘ ଶ୍ୱାସ ଛାଡ଼େ । ସ୍ପର୍ଶର ମୋହରେ ଜାଣି ନ ଜାଣିଲା ପରି ପୁରୁଷ ଦେହର ସ୍ପର୍ଶ ଅନୁଭବ କରିଛି······ମଣିଷକୁ ବିନା ଅପରାଧରେ କୌଣସି ସୁଯୋଗରୁ ବଞ୍ଚିତ କଲେ ସେ ଅନ୍ୟ ଉପାୟରେ ତାହା ହାସଲ କରିବାକୁ ଚେଷ୍ଟା କରେ । ଗାୟତ୍ରୀ ସେ ପ୍ରଲୋଭନରୁ ବାଦ ପଡ଼ି ନଥିଲା । କିନ୍ତୁ ସେ ସଂଯତ ଥିଲା । ନୈତିକତା ଏବଂ ସାମାଜିକତା ବାହାରେ ସେ

କୌଣସି ସ୍ୱପ୍ନ ଦେଖିବାକୁ ଘୃଣା କରୁଥିଲା । ଜୀବନର ସମସ୍ତ ବୈଭବ ପାଇ ସୁଦ୍ଧା ତାର ସାଥୀମାନେ ଯେତେବେଳେ ଗୋଡ ଖସେଇ ବସନ୍ତି, ସେତେବେଳେ ଗାୟତ୍ରୀ ତାର ଅନ୍ଧକାରମୟ ଭବିଷ୍ୟତକୁ ଅସ୍ୱୀକାର କରି ନୀତକୁ ସମ୍ମାନ ଦିଏ ।

ସତେ କ'ଣ ସେ ନୀତକୁ ସମ୍ମାନ ଦେଇଛି ? ନିଜ ଜୀବନ ଉପରେ ଚିନ୍ତା କରୁ କରୁ ଅଟକି ଗଲା ଗାୟତ୍ରୀ । ସତେ କ'ଣ ସେ ଜୋର ଦେଇ କହି ପାରିବ ସେ ନୀତକୁ ସମ୍ମାନ ଦେଇଛି ବୋଲି ?

ଯାହାର ମନ୍ତ୍ର ନାହିଁ, ତାର ମୂଲ୍ୟ କଥା !! ଅନାତର ପ୍ରଶ୍ନ ଉଠିନି ଗାୟତ୍ରୀର ଜୀବନରେ । ନିଷ୍ଠୁରତା ତାକୁ ବିକଳ କରିଛି । କାହିଁ କେବେ କାହାର ଅମ୍ଳାନବେଦନ ଗାୟତ୍ରୀର ବିବେକ ପାଖରେ ଉତ୍ଥାପିତ ହୋଇ-ନାହିଁତ ! ଗୋଟାଏ ନିର୍ଜ୍ଜନ ମରୁରେ ଗାୟତ୍ରୀ ସନ୍ନ୍ୟାସିନୀ ହୋଇଛି !!

ଗାୟତ୍ରୀ ଅସ୍ତବ୍ୟସ୍ତ ହେଲା । ମୁଣ୍ଡରେ ପୁଣ୍ଡେ ରକ୍ତ ଭର୍ତ୍ତି ହୋଇ ଗଲାଭଳି ସେ ଅନୁଭବ କଲା । ଆଖି ଆଗରେ ଛାୟା ମୂର୍ତ୍ତିପରି ଭାସିଗଲେ ଅନେକ ବ୍ୟକ୍ତି, ଯେ ପ୍ରେମ ଓ ବ୍ୟଭିଚାରର ଅଳରେ ଗାୟତ୍ରୀ ପାଖେ ଦିନେ ପଡ଼ିବାକୁ ତିଆର ହୋଇ ଆସିଛନ୍ତି । ସନ୍ନ୍ୟାସିନୀ ପରି ଗାୟତ୍ରୀ ସେମାନଙ୍କୁ ଶାନ୍ତ କରୁଛି । ସରସ ଜୀବନର ମନ୍ତ୍ରରେ ସେମାନଙ୍କୁ ଦୀକ୍ଷିତ କରୁଛି । ଦୁର୍ବଳ ହୋଇ ଫେରି ଯାଉଛନ୍ତି ସେମାନେ । ବିଜୟିନୀ ପରି ଗାୟତ୍ରୀ ହସୁଛି ତୃପ୍ତିର ହସ । ସେ ଗାୟତ୍ରୀ ଓ ଏ ଗାୟତ୍ରୀ ଭିତରେ ପ୍ରଭେଦ କେବଳ କେତେଟା ଅଭିନୟର । କିନ୍ତୁ କାହିଁ ସେ ଅଭିନୟ ? ଜମାଟବନ୍ଧା ଅସନ୍ତୋଷ ଏକା-ବେଳକେ ମୁହଁ ପରି ମୁକ୍ତ ହୋଇଗଲା ଯେପରି—ଏକ ପ୍ରଚଣ୍ଡ ଦୀର୍ଘଶ୍ୱାସ ଥରି ଥରି ଜଳୁଥିବା ସହମବତୀକୁ ଲିଭେଇ ଦେଲା ।

ଅନ୍ଧାରରେ ଗାୟତ୍ରୀ ଶୁଣି ପାରିଲା ନିସ୍ତବ୍ଧ ସହର ବକ୍ଷତଳ ଦୂରରୁ ଭାସି ଆସୁଥିବା କେଉଁ ଏକ ପୋଷା କୁକୁରର ଚିତ୍କାର ।

'ଠକ୍... ଠକ୍...' ବାହାର ଦରଜାରେ କିଏ ଅଘାତ କରୁଛି । ରାତି ଦୁଇଟା ବେଳେ କିଏ ?

ସେ ପୁଣି ଦରଜାର କଡ଼ା ଟେରି ଝଣ୍ ଝଣ୍ କଲା ଖୁବ୍ ଧୀରେ ଧୀରେ ।

ଗାୟତ୍ରୀ ଦରଜା ପାଖକୁ ଯାଇ ଠିଆ ହେଲା ଖୁବ୍ ଦମ୍ଭରେ ପଚାରିବ ନା ଗୃହକର୍ତ୍ତ୍ରୀଙ୍କୁ ଉଠେଇବ ?

ଗାୟତ୍ରୀ... ପରିଚିତ ସ୍ୱର ଡାକିଲା ପୁଣି 'ଗାୟତ୍ରୀ, ଗାୟତ୍ରୀ.. ମୁଁ କମ୍ରେଡ୍ ଶ୍ରୀଚରଣ, ଏଠି ପନ୍ଦର ମିନିଟ୍ ହେବ ଅପେକ୍ଷା କରିଛି । ବଡ଼ କରୁଣ୍ଟି କାମ......' ।

କେମ୍ଭ୍ରତ୍ ଶ୍ରୀଚରଣ ? ଏତେ ରାତିରେ ? କ'ଣ ପୋଲିସ୍ ଲାଗିଛି ପଛରେ ?

ଗାୟତ୍ରୀର ଶରୀରରେ ଚମକ ଲାଗିଲା । ସେ ଆଜି କେମ୍ବ୍ରେଡ୍ ଶ୍ରୀଚରଣକୁ ଅଣଦେଖି ଦେବ । ସୁନ୍ଦର, ବଳିଷ୍ଠ, ସୁବକ୍ତା କେମ୍ବ୍ରେଡ୍ ଶ୍ରୀଚରଣ·· ଭଦ୍ର ଏବଂ ନମ୍ର । ଏଇ ଲୋକଟାକୁ ଗାୟତ୍ରୀ ବେଳେ ବେଳେ ଖୁବ୍ ପସନ୍ଦ କରେ । କିନ୍ତୁ ଅତି ବେଶୀ ପସନ୍ଦ କଲାବେଳକୁ ଦର୍ପଣରେ ନିଜର ପ୍ରତିବିମ୍ବ ଦେଖି ନିଜ ମସ୍ତିଷ୍କକୁ ଫାଙ୍କା କରି ପାରିଥାଏ ସେ ।

ଗାୟତ୍ରୀ ଦରଜା ଖୋଲିଦେଲା । ଟଳି ଟଳି ଭିତରକୁ ପଶି ଆସିଲା ଶ୍ରୀଚରଣ । ହାଲୁକା ଅନ୍ଧାରରେ ତାର ଗ୍ଲାଇଟା ବେଶ୍ ସୁନ୍ଦର । ଗାୟତ୍ରୀ କିମିତି କିମିତି ଅନୁଭବ କଲା । ଜୀବନରେ କେବେ ପୁରୁଷ ପାଖରେ ଏମିତି ଏକୁଟିଆ ରହିବା ତାର ପ୍ରଥମ ଅନୁଭୂତି—ପୁଣି ଏ ଶ୍ରୀଚରଣ··· ଗାୟତ୍ରୀର ସ୍ୱପ୍ନରେ ବ ଶ୍ରୀଚରଣ ଏମିତି କେବେ ଆସିନାହିଁ ଗାୟତ୍ରୀର କୋଠରୀକୁ ।

'ଦରଜା ଜଅ' ଶ୍ରୀଚରଣ କହୁଛି । ଶ୍ରୀଚରଣ କହୁଛି ! ହଁ, ଏଇତ, ଶ୍ରୀଚରଣ କହୁଛି ।

ଗାୟତ୍ରୀ ଦରଜା ଦେଲା । ଘର ଭିତରେ କିମିତି ଏକ ହାଲୁକା ଗନ୍ଧ ଖେଳିଲାଣି । କିମିତି ଅମ୍ଳିଆ ଅମ୍ଳିଆ ଗନ୍ଧ ।

'ଆଲୁଅ ଲଗାଏଁ' ଗାୟତ୍ରୀ ଟେବୁଲ ପାଖକୁ ଯାଇ କ'ଣ ଅଣ୍ଡାଳିବାରେ ଲାଗିଲା ।

'କ'ଣ ଖୋଜୁଛ ?' ଗାୟତ୍ରୀର କାନ୍ଧ ଉପରେ ଶ୍ରୀଚରଣର ହାତ ।

ଶ୍ରୀଚରଣ କଥା କହିଲାବେଳେ ତା ମୁହଁରୁ ଗନ୍ଧ ବାହାରୁଛି ।

'ଏଇ, ଗାୟତ୍ରୀ··· କ'ଣ ଖୋଜୁଛ ?'

'ମହମବତୀ ।' ଗାୟତ୍ରୀ ହଠାତ୍ ଉତ୍ତର ଦେଲା । ଶ୍ରୀଚରଣର ମୁହଁରୁ ଗନ୍ଧ ବାହାରୁଛି । କିନ୍ତୁ ଗାୟତ୍ରୀ, ସେ ସବୁ ଭୁଲି ଯାଇଛି—ଦେହରେ ତାର କିପରି ଏକ ଝିମିଝିମିଆ ଅନୁଭବ ।

ଶ୍ରୀଚରଣ ଗାୟତ୍ରୀର ହାତ ଧରି ଟାଣି ଆଣି ବସେଇଦେଲା ଖଟ ଉପରେ ।

'ବସ । ମହମବତୀ ଦରକାର ନାହିଁ ।' ଅଧମିନିଟ୍ର ନୀରବତା । ଗାୟତ୍ରୀକୁ ବାନ୍ତି ଲାଗୁଛି । ତା ଛାତି ଭିତରେ ନିଃଶ୍ୱାସ ବନ୍ଦ ହୋଇ ଗଲାପରି ପୀଡ଼ା ।

'ଗାୟତ୍ରୀ ! ବାହାରେ ଚମତ୍କାର ଜହ୍ନ ରାତି । ଏଇ ଜହ୍ନ ରାତିକୁ ପୂର୍ଣ୍ଣ ଉପଭୋଗ କରି ଖାଲି ଗୋଡ଼ରେ ଚାଲି ଚାଲି ଆସିଚି ମୁଁ ଏଇ ଅନ୍ଧକାର ଭିତରକୁ ମହମବତୀ ଜାଳିବାକୁ ନୁହେଁ—ଥରଟିଏ ପାଇଁ ଅନ୍ଧାର ଭିତରେ ସାରା ଦୁନିଆକୁ ସମାନ କରି ଦେଖିବା ପାଇଁ । ଏ ଆଲୁଅ ଅସହ୍ୟ । ଏ ଜହ୍ନ ରାତି ଅସହ୍ୟ । ଏଥିରେ ଅସମାନ ପୃଥିବୀ ଆହୁରି ଅସମାନ ହୁଏ । କମ୍ରେଡ୍ ଶ୍ରୀଚରଣ ସାମ୍ୟ ଚାହେଁ—ସାମ୍ୟ । ବୁଝିଲ ଗାୟତ୍ରୀ ? କୁଆଡ଼େ ଗଲ ତୁମେ ?'

ଗାୟତ୍ରୀର ବିଛଣା ଉପରେ ବସିପଡ଼ି ଶ୍ରୀଚରଣ ଗାୟତ୍ରୀର ଡାହାଣ ହାତକୁ ଜାବୁଡ଼ି ଧରିଲା ନିଜର ବାଁ ହାତରେ ।

ଗାୟତ୍ରୀ ଥରୁଚି ।

'ଏ କ'ଣ ଗାୟତ୍ରୀ ?' ଶ୍ରୀଚରଣ ନିଜ ମୁହଁକୁ ଗାୟତ୍ରୀ ପାଖକୁ ନେଇ ପଚାରିଲା । ତା ମୁହଁରୁ ଅମ୍ଳିଆ ଗନ୍ଧ ବାହାରୁଚି ।

'ତମେ କ'ଣ ଖାଇଚ ।' ଗାୟତ୍ରୀ ଅଭିଯୋଗ କଲା । ତାର ଅଜାଣତରେ ସେ ଶ୍ରୀଚରଣଙ୍କୁ 'ତମେ' ସମ୍ବୋଧନ କରି ପକେଇଚି ।

ମୁଁ କ'ଣ ଖାଇଚି ! ଓ, ତମେ ଭାବୁଚ ମୁଁ ପିଇଚି ବୋଲି । ଭୁଲ୍ ଭାବିଲ, ଗାୟତ୍ରୀ ! କମ୍ରେଡ ଶ୍ରୀଚରଣ ଏ ପର୍ଯ୍ୟନ୍ତ ଜୀବନରେ ମଦ ଓ ନାରୀର ଆଶ୍ରୟ ନେଇନାହିଁ, ମୁଣ୍ଡ ବିନ୍ଧା ଯୋଗୁ ଅସୁସ୍ଥ ଥିଲି । କିଛି ଗୁଡ଼ାଏ ଔଷଧ ପିଇବାକୁ ଦେଲେ ଡକ୍ଟର୍ କୁମାର । କହିଲେ, ମୁଣ୍ଡ ଠିକ୍ ହୋଇଯିବ ଘଣ୍ଟାକ ଭିତରେ । କିନ୍ତୁ ଏବେବି ମଧ ମୁଣ୍ଡଟା ବୁଲାଉଚି ସେମିତି ।'

'ମୁଣ୍ଡଟା ଟିପିଦିଏ...' ଗାୟତ୍ରୀର ସ୍ୱରରେ ଅସ୍ୱାଭାବିକ କୋମଳତା । ବହୁଦିନର ସଞ୍ଚିତ ଦରଦ ଆଜି ମୁକ୍ତ ହୋଇଚି ।

'ଗାୟତ୍ରୀ ! ତମେ ଦେବୀ ..' ଶ୍ରୀଚରଣ ବିଛଣାରେ ଚିତ୍ ହୋଇ ଶୋଇ ପଡ଼ିଲା । ଶ୍ରୀଚରଣ ମୁଣ୍ଡ ଆଡ଼େ ଠିଆହୋଇ ଗାୟତ୍ରୀ ଶ୍ରୀଚରଣର ମୁଣ୍ଡ ଟିପିବାରେ ଲାଗିଲା ଖୁବ୍ ଯତ୍ନରେ ।

'ତମେ ଦେବୀ ଗାୟତ୍ରୀ । ତମେ ଦେବୀ । ମୁଁ ଦେବତାଙ୍କୁ ବିଶ୍ୱାସ କରେ ନାହିଁ । କିନ୍ତୁ ମଣିଷଠୁଁ ଅଧିକ—ନା, ନା, ମଣିଷର ପୂର୍ଣ୍ଣ ବିକାଶକୁ ମୁଁ ଦେବତା କହୁଥାଏ । ତମେ ମୋର ଦେବୀ ଗାୟତ୍ରୀ । ତମେ ଦେବୀ...'

ଗାୟତ୍ରୀ ଚମକି ପଡ଼ିଲା । କ'ଣ କହୁଚି ଶ୍ରୀଚରଣ ! ସେ ଆଜି ଅସ୍ୱାଭାବିକରୂପେ ବିଶୃଙ୍ଖଳ, ସେ ମଦ ପିଇଚି ବୋଧହୁଏ । କିନ୍ତୁ... ସେ ପିଇ ନ ଥାଇ ପାରେ । ଗାୟତ୍ରୀ ତ ମଦ ପିଇ ନାହିଁ । ତଥାପି ତାର ନିଜ ଆୟତରେ ସେ ନାହିଁ । କମ୍ରେଡ୍ ଶ୍ରୀଚରଣ... ମଣିଷର ସରସତାରେ ଗଢ଼ା କମ୍ରେଡ୍ ଶ୍ରୀଚରଣ... ।

ସବୁକିଛୁ ହେତୁ ଧାଡ଼୍‌ଡରେ ସଂଗ୍ରାମ କରି ଉଠୁଛନ୍ତି ଗାୟତ୍ରୀର ପେଶୀଗୁଡ଼ାକ । ତାର ଅଙ୍ଗୁଠିଗୁଡ଼ା ଅସ୍ୱାଭାବିକରୂପେ ଅସଂଯତ ହୋଇ ଶ୍ରୀଚରଣର ମୁଣ୍ଡ ଚପି ଲାଗିଛନ୍ତି ।

କମ୍ରେଡ୍ ଶ୍ରୀଚରଣ—ସୁନ୍ଦର ଏବଂ ବଳିଷ୍ଠ , ଭଦ୍ର ଏବଂ ନମ୍ର ।

ମଣିଷର ଜୀବନକୁ ସମ୍ମାନ ଦିଏ କମ୍ରେଡ୍ ଶ୍ରୀଚରଣ । ସାମ୍ୟର ପୂଜାରୀ ଶ୍ରୀଚରଣ । ଶ୍ରୀଚରଣ ସାମ୍ୟ ଗୃହେ—ସାମ୍ୟ ।

ଅନ୍ଧାର ଭିତରେ ସାମ୍ୟର ଅସ୍ୱାଦନ । ଯେଉଁଠି ସୁନ୍ଦର କୁତ୍ସିତର ସ୍ଥାନ ନାହିଁ । ସେଠି କେବଳ ଜୀବନର ଖେଳ । ଗାୟତ୍ରୀ ଗୃହେନି ମହାମହିମୀର ଅନଧିକାର ଚର୍ଚ୍ଚା । ତା ଅଲକ୍ଷ ବାଦଶାହୀ ଅନୁଭୂତି ଭିତରେ ବାନ୍ଧିଦିଏ ପ୍ରାସାଦର ପ୍ରାଚୁର୍ଯ୍ୟ ଭିତରୁ ବୃଦ୍ଧ ମାଳୀକୁ ।

ଶ୍ରୀଚରଣ ଚୁପ୍ ପଡ଼ିଯାଇଛି । ସେ କ୍ଳାନ୍ତ । ହଠାତ୍ ପୁଣି ଚମକି ଉଠିଲା ଗାୟତ୍ରୀ··· ଶ୍ରୀଚରଣ ଅସୁସ୍ଥ । କ'ଣ ଗୁଡ଼ାଏ ଭାବୁଛି ଗାୟତ୍ରୀ ? ଇସ୍··· ଜଣେ ଝିଅ ପକ୍ଷେ ଏ ନୀଳକ୍ଷ ଭାବନା ·· । ଇସ୍··· ଗୋଟାଏ ନୂଆ ଅନୁଭୂତି ନିକଟରେ ତଳକୁ ଖସେଇ ନେଇଛି ତାକୁ··· ଗାୟତ୍ରୀ ସଂଯତ ହୋଇ ଉଠିଲା ।

'ଗାୟତ୍ରୀ ! ତମେ ଠିଆ ହୋଇ ରହିଛ ; ବସ ଏଇ ପାଖରେ ।' ଶ୍ରୀଚରଣ ଭିଡ଼ି ଆଣିଲା ଗାୟତ୍ରୀକୁ ନିଜ ପାଖକୁ ।

'ତମେ ଅସୁସ୍ଥ ।' ଗାୟତ୍ରୀ ପୁଣି ନିଜକୁ ହରେଇଛି । ସେ ଭୁଲି-ଯାଇଛି ଶ୍ରୀଚରଣକୁ 'ଆପଣ' ବୋଲି ସମ୍ବୋଧନ କରିବାକୁ । କ'ଣ କହିବ ବୋଲି ଗାୟତ୍ରୀର ଓଠ ଥରୁଛି, ଅଥଚ ତା ମୁହଁରେ ଭାଷା ନାହିଁ । ଗାୟତ୍ରୀର ହାତକୁ ମୁଠେଇ ଧରି ଶ୍ରୀଚରଣର ହାତ ବନ୍ଧ ଯାଇଛି ।

କି ଏକ ଉତ୍ତେଜନାରେ ଶ୍ରୀଚରଣ ଉପରକୁ ଆଉଜି ଯାଇ ଗାୟତ୍ରୀ କହିଲା ଖୁବ୍ ଧୀର ସ୍ୱରରେ, ତମେ ଟିକେ ଶୋଇପଡ଼ ଶ୍ରୀଚରଣ··· ତମେ ଯେ ଅସୁସ୍ଥ ।'

ଏକ ଛନ୍ଦ ସରସ ଭଙ୍ଗୀରେ ଗାୟତ୍ରୀକୁ ଆହୁରି ପାଖକୁ ଭିଡ଼ିନେଇ ଶ୍ରୀଚରଣ କହିଲା, 'ତମର ଅବହେଳିତ ଯୌବନରେ ଜୀବନର ନିବେଦନ କିନ୍ତୁ ଯେ ଖୁବ୍ ସୁସ୍ଥ, ଗାୟତ୍ରୀ ।'

ବାହାରେ·· ସେ ରାତି ଚୁପ୍ ପଡ଼ିଯାଇ ଶୁଣୁଥିଲା ଜୀବନର ମର୍ମବାଣୀ ।

---

ଶ୍ରୀ ଆଶୁତୋଷ ପ୍ରସାଦ ପଟ୍ଟନାୟକ



# ପ୍ରଦୀପର ଅଭିମାନ

ମାଟିର ପ୍ରଦୀପ ଚାହିଁ ରୂପମୟୀ ସୁବର୍ଣ୍ଣ ପ୍ରଦୀପ
ତା ଅନ୍ତର ଉଜ୍ଜ୍ୱଳତା ଗର୍ବେ ଯେବେ ନ କହିଲା କଥା,
ଆପଣାର ମୂଲ୍ୟ ଲାଗି ହେଲା ଯେବେ ଅଯଥା ଗମ୍ଭୀର,
କହିଲା ମାଟିର ଦୀପ ତୋଳି ଧୀରେ ମ୍ରିୟମାଣ ମଥା—

"ସଖି ତୁମ ମୂଲ୍ୟ ବହୁ ଜାଣେ ତୁମେ ସୁବର୍ଣ୍ଣ ନିର୍ମିତ
ଉଜ୍ଜ୍ୱଳ, ସୁନ୍ଦର ତୁମେ ଅଭିଜାତ ଗୃହେ ତୁମ ବାସ,
ମୁଁ କିନ୍ତୁ ଦରିଦ୍ର ଅତି, ମୂଲ୍ୟ ମୋର କେତୋଟି ପଇସା,
ସେ କେଉଁ ସୁଦୂର ପଲ୍ଲୀ କୁଟୀରେ ମୁଁ ନିତ୍ୟ କରେ ବାସ ।

ତଥାପି ଗୋଟିଏ କଥା କହେ--ଶୁଣ ବାନ୍ଧବୀ ଗୋ ମୋର,
ଏତେ ସିନା ବ୍ୟବଧାନ, କିନ୍ତୁ ଆମ ଏକଇ ଜୀବିକା;
ତୈଳ ଆଉ ବର୍ତ୍ତିକାର ଆମ ଗର୍ଭେ କରି ସହଯୋଗ,
ଆମର କେବଳ ଧର୍ମ ଅନ୍ଧକାରେ ଉଠାଇବା ଶିଖା ।

ତେଣୁ ମୁଁ ପଚାରେ ଆଜି କିବା ଲାଗି ଏତେ ଅହମିକା,
ଆଲୋକ କି ବେଶି ଦିଅ ଅୟି ସଖି ସୁବର୍ଣ୍ଣ ଦୀପିକା !"





# ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ

ଅଧ୍ୟାପକ **ପଠାଣି ପଟ୍ଟନାୟକ**

## ପରାଧୀନତାର ଅନ୍ଧକାର

ଦୀର୍ଘକାଳର ପରାଧୀନତା ପରେ ଭାରତବର୍ଷ ସ୍ୱାଧୀନତାର ଦ୍ୱାଦଶ ବର୍ଷରେ ପଦାର୍ପଣ କରିଅଛି । ଗୋଟିଏ ସ୍ୱାଧୀନ ଜାତିର ବିକାଶ ପାଇଁ ଏହି ସମୟ ବିଶେଷ କିଛି ନୁହେଁ । ତେବେ ଏହି ସ୍ୱଳ୍ପକାଳ ମଧ୍ୟରେ ଜାତୀୟ ଜୀବନର ଉନ୍ମେଷର ଧାରା ଲକ୍ଷ୍ୟ କଲେ ମନରେ ଅପୂର୍ବ ଅହ୍ଲାଦ ଜାତ ହୁଏ ।

ପରାଧୀନତା ଜାତୀୟ ବିକାଶରେ ପ୍ରଧାନ ପ୍ରତିବନ୍ଧକ । କାରଣ ଜାତି ତଥା ସମାଜର ସ୍ୱାଧୀନ ବିକାଶ ପ୍ରତିହତ ହେବା ଫଳରେ ମନ ଅତ୍ୟନ୍ତ ଶଙ୍କୁଚିତ ହୋଇଯାଏ । ମୁସଲମାନ ଅଥବା ମରହଟ୍ଟା ଶାସନ କାଳରେ ଦେଶରେ ଅନେକ ସ୍ଥଳରେ ଅରାଜକତା, ଅଶାନ୍ତି ଅଥବା ବିଦ୍ରୋହ ଦେଖାଦେଇଥିଲେହେଁ ଜାତୀୟ ଜୀବନରେ ଉନ୍ମାଦନା ଓ ଉତ୍ସାହ ମରିଯାଇ ନ ଥିଲା । ଦୁଇ ବିପରୀତ ଧର୍ମୀ ସଂସ୍କୃତିର ଆଦାନ ପ୍ରଦାନ ଫଳରେ ଭାରତୀୟ ଜୀବନରେ ନୂତନ ଉନ୍ମେଷ ଓ ସଚେତନ ଭାବ ପ୍ରକଟିତ ହୋଇଥିଲା । ମାତ୍ର ଇଂରେଜ ଶାସନ କାଳରେ ଏକ

ବିଦେଶୀ ସଂସ୍କୃତି ଓ ସାହିତ୍ୟର ଦାରୁଣ ପ୍ରଭାବ ଅର୍ଥ ସଂସ୍କୃତିକୁ ହୀନପ୍ରଭ କରି ଏହି ବିଶାଳ ପରାଧୀନ ଜାତିକୁ ଅନ୍ତଃବିସ୍ମୃତ କରିଦେବା ଫଳରେ ଜାତୀୟ ପ୍ରଗତି ଯେପରି ପ୍ରତିହତ ହେଲା, ସେହିପରି ଜାତୀୟ ଜୀବନ ମଧ୍ୟ ହୀନବୀର୍ଯ୍ୟ ହୋଇଗଲା ।”

ତେବେ ପରାଧୀନତାର ଏହି କଳଙ୍କିତ କାଳରାତ୍ରି ମଧ୍ୟରେ ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତି ଏ ଦେଶର ସମାଜରେ ଏକ ନୂତନ ଚେତନାବୋଧ ଓ ଆତ୍ମବିଶ୍ୱାସର ସଞ୍ଚାର କଲା । ଫଳରେ ଶିଳ୍ପ, ସାହିତ୍ୟ ଓ ଶିକ୍ଷାଦିଗରୁ ଭାରତରେ କେତେକ ଅଞ୍ଚଳରେ ବହୁ ଭାବରେ ଅଗ୍ରସର ହେଲେ, ମାତ୍ର ଏ ସଂପର୍କରେ ଓଡ଼ିଶାର କଥା ବିଚାର କଲେ ହତାଶ ହେବାକୁ ପଡ଼େ । ଦୀର୍ଘକାଳର ଇଂରେଜ ଶାସନ କାଳରେ ଭାରତବର୍ଷରେ ଯଦି କେଉଁ ଅଞ୍ଚଳର ମାରାତ୍ମକ କ୍ଷତି ସାଧିତ ହୋଇଥାଏ, ତେବେ ତାହା ଓଡ଼ିଆ ଭାଷୀ ଭୂଖଣ୍ଡର ବୋଲି ଗ୍ରହଣ କରିବାକୁ ହେବ ।

ବଙ୍ଗଳା ଦଖଲ କରିବାର ପ୍ରାୟ ପଚାଶବର୍ଷ ପରେ ଇଂରେଜବାହିନୀ ଓଡ଼ିଶା ଅଧିକାର କରିଥିଲେ । ମାତ୍ର ସୁଦୃଢ଼ ଶାସନର ବ୍ୟବସ୍ଥା ଅବଲମ୍ବିତ ହେବା ପୂର୍ବରୁ ଇଂରେଜ ଶାସନ ସଂସ୍ଥା ବିରୁଦ୍ଧରେ ଓଡ଼ିଶାରେ ପ୍ରବଳ ବିଦ୍ରୋହ ଓ ବିକ୍ଷୋଭ ଦେଖାଦେଇଥିଲା । ତେଣୁ ଓଡ଼ିଆ ଜାତିର ମେରୁଦଣ୍ଡ ଭାଙ୍ଗିଦେବା-ପାଇଁ ଇଂରେଜମାନେ ପ୍ରଥମରୁ ବଦ୍ଧପରିକର ହୋଇଥିଲେ । ରାଜନୈତିକ ଶାସନ ସଂସ୍ଥା ଦୃଷ୍ଟିରୁ ଓଡ଼ିଶା ଖଣ୍ଡବିଖଣ୍ଡିତ ହୋଇ ବହୁକାଳପାଏଁ ମାନ୍ଦ୍ରାଜ, ବଙ୍ଗଳା ଏବଂ ବିହାର ସହିତ ଜଡ଼ିତ ହୋଇ ରହିଥିଲା । ଓଡ଼ିଆଭାଷୀ ଲୋକଙ୍କର ସ୍ୱତନ୍ତ୍ର ପ୍ରଦେଶ, ବିଦ୍ୟାଳୟ ଅଥବା ହାଇକୋର୍ଟ ନଥିଲା । ତେଣୁ ଉଚ୍ଚ ଦରବାରରେ ଓଡ଼ିଆ ଲୋକେ ସର୍ବଦା ନ୍ୟାୟ ଆଶା କରିପାରୁ ନ ଥିଲେ । ଇଂରେଜ ଶାସନର ପ୍ରଥମ କାଳରେ କେବଳ ଅର୍ଥନୀତି ଅଥବା ଶିକ୍ଷାର ବିସ୍ତାର ଦିଗରୁ ଯେ ଓଡ଼ିଆ-ମାନେ ପଛରେ ପଡ଼ିଥିଲେ ତାହାନୁହେଁ, ଓଡ଼ିଆ ଭାଷାକୁ ଲୋପ କରିଦେବା ପାଇଁ ପ୍ରବଳ ଉଦ୍ୟମ ହୋଇଥିଲା । ବିଂଶ ଶତାବ୍ଦୀରେ ତୃତୀୟ ଦଶକ ପର୍ଯ୍ୟନ୍ତ ଓଡ଼ିଶାରେ ଗୋଟିଏ ଦୈନିକ ସମ୍ବାଦପତ୍ର ପ୍ରକାଶିତ ହେବା ସମ୍ଭବପର ହୋଇ ନଥିଲା ।

## ସ୍ୱାଧୀନତାର ପ୍ରଭାତ

ସୁଖରକଥା ଯେ ସ୍ୱାଧୀନତାର ଉଜ୍ଜ୍ୱଳ ଆଲୋକରେ ଦେଶର ବହୁମୁଖୀ ବିକାଶ ପାଇଁ ନୂତନ ଆଶା ଓ ଉନ୍ମାଦନା ପ୍ରକାଶ ପାଇଅଛି । ଅନେକ ସମୟରେ ଇତିହାସର ଦୁର୍ଘଟଣାକୁ ବିସ୍ମୃତ ହୋଇ ବହୁ ସମାଲୋଚକ ଓଡ଼ିଆ ଜାତିର

ଅଧଃପତନକୁ ଛାଇଲାଏ କରିଥାନ୍ତି । ମାତ୍ର ପ୍ରଗତି ଚକ୍ରର ଘୂର୍ଣ୍ଣନ ଫଳରେ ଅମାବାସ୍ୟାର ଅନ୍ଧକାର ଅପସାରିତ ହୋଇ ନୂତନ ଆଲୋକ ପ୍ରତିଭାତ ହୋଇ ଅଛି । ଏଣିକି ଆଶା କରାଯାଇପାରେ ଯେ ଏ ଜାତିର ଶିଳ୍ପ, ସାହିତ୍ୟ ଓ ସଂସ୍କୃତିର ବିକାଶ ଅବଶ୍ୟମ୍ଭାବୀ ।

କାରଣ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଓଡ଼ିଶାରେ ସ୍ୱତନ୍ତ୍ର ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ଏହା ପୂର୍ବରୁ ଏ ପ୍ରଦେଶରେ ଗୋଟିଏ ମାତ୍ର ସରକାରୀ ପରିଚାଳିତ କଲେଜ ବିଦ୍ୟମାନ ଥିଲା । ମାତ୍ର ସ୍ୱାଧୀନତା ସଙ୍ଗେ ସଙ୍ଗେ ପ୍ରାୟ ପ୍ରତ୍ୟେକ ଜିଲ୍ଲା ଓ ସହରରେ ବହୁ ଉଚ୍ଚ ବିଦ୍ୟାଳୟ ଓ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇଅଛି । ଓଡ଼ିଆ ପିଲାମାନଙ୍କର ଉଚ୍ଚଶିକ୍ଷାର ପଥ କ୍ରମଶଃ ସୁଗମ ହୋଇଅଛି । ବିଶ୍ୱବିଦ୍ୟାଳୟ ନେତୃତ୍ୱରେ ଗବେଷଣା ଓ ଅଧ୍ୟୟନ ପାଇଁ ଅଧିକ ବ୍ୟବସ୍ଥା ଅବଲମ୍ବିତ ହେଉଅଛି ।

## ପତ୍ର ପତ୍ରିକାର ଅଭ୍ୟୁଦୟ

ସ୍ୱାଧୀନତା ପରେ ପରେ ଓଡ଼ିଶାର ପ୍ରଗତିରେ ଉଲ୍ଲେଖ ଯୋଗ୍ୟ ଘଟଣା ହେଉଛି ବହୁ ପତ୍ରପତ୍ରିକାର ବିକାଶ । ଦିନଥିଲା ଯେତେବେଳେ ଏ ଦେଶରେ ଏକମାତ୍ର ସାହିତ୍ୟ ପତ୍ରିକାର ଗ୍ରାହକ ସଂଖ୍ୟା ପାଞ୍ଚଶହରୁ ଅଧିକ ହୋଇ ପାରି ନଥିଲା । ମାତ୍ର ସ୍ୱାଧୀନତାର ଅଳ୍ପକାଳ ମଧ୍ୟରେ ବହୁ ମାସିକ, ପାକ୍ଷିକ ଓ ସାପ୍ତାହିକ ପତ୍ର ଜନ୍ମ ଲଭିଲେ । ଅନେକ କ୍ଷୀଣଜୀବୀ ହେଲେହେଁ ନିଜର ସ୍ୱଳ୍ପ କାଳର ସାଧନା ମଧ୍ୟରେ ବହୁ ଲେଖକଙ୍କୁ ଜନ୍ମଦେଇ ଗୌରବ ଅର୍ଜନ କରିଅଛନ୍ତି । ନବଚାର ପ୍ରଜାତନ୍ତ୍ର, ଝଙ୍କାର, ଡଗର, କୁଙ୍କୁମ, ଆସନ୍ତାକାଲି ଭଳି ପତ୍ର ପତ୍ରିକା ନୂତନ ଲେଖକମାନଙ୍କୁ ଉତ୍ସାହିତ କରି ଏକ ନୂତନ ସାହିତ୍ୟ ସମାବେଶ ସୃଷ୍ଟିକଲେ, ପୁନଶ୍ଚ ପୂର୍ବର ଗତାନୁଗତିକତାକୁ ଏଡ଼ିଦେଇ ଏ ଯୁଗର ପତ୍ରପତ୍ରିକା କଥାବସ୍ତୁ, ବିଷୟ ନିର୍ବାଚନ ତଥା ପ୍ରକାଶ ପଦ୍ଧତିରେ ବୈଚିତ୍ର୍ୟ ଓ ନୂତନ ଦୃଷ୍ଟିଭଙ୍ଗୀ ସୃଷ୍ଟି କଲେ । ଆଧୁନିକ ସାହିତ୍ୟ ସୃଷ୍ଟିରେ ପତ୍ରପତ୍ରିକାର ଦାନ ଉଲ୍ଲେଖ ଯୋଗ୍ୟ ।

## ପଞ୍ଚବାର୍ଷିକ ଯୋଜନା ଓ ଶିଳ୍ପ ବିପ୍ଳବ

ଏ ଯୁଗ ହେଉଛି ପରିକଳ୍ପନାର ଯୁଗ । ଯୋଜନା ମାଧ୍ୟମରେ ଦେଶର ବିକାଶପାଇଁ ଉଦ୍ୟମ ସ୍ୱାଧୀନତା ଯୋଗୁହିଁ ସମ୍ଭବ ହୋଇଅଛି । ଦେଶର ବିଭିନ୍ନ ସ୍ଥଳରେ ବହୁ କ୍ଷୁଦ୍ର ଓ ବୃହତ୍ ଶିଳ୍ପ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଅଛି । ବିଦ୍ୟୁତଶକ୍ତି ଉତ୍ପାଦନ ପାଇଁ ବହୁ ବଡ଼ ବଡ଼ ଯୋଜନା କାର୍ଯ୍ୟକାରୀ ହେଉଅଛି ।

କୃଷି ବହୁଳ ଭାରତବର୍ଷରେ ଏକପ୍ରକାର ଶିଳ୍ପ ବିପ୍ଳବ ଆରମ୍ଭ ହୋଇଛି କହିଲେ ଚଳେ । ଦେଶର ଚତୁର୍ଦ୍ଦିଗରେ ଉନ୍ନତ ଧରଣର ରାସ୍ତା, ପୋଲ, ନିର୍ମାଣ ହେବା ଫଳରେ ଦେଶର ଅଭ୍ୟନ୍ତର ସହିତ ସଂପର୍କ ସ୍ଥାପନ ସହଜ ହୋଇଅଛି ।

ପଲ୍ଲୀ ଜୀବନରେ ପୂର୍ବର ସେ ଅଜ୍ଞତା ଆଉ ନାହିଁ । ନଗର ଓ ପଲ୍ଲୀ ଜୀବନର ଭାବର ଆଦନ ପ୍ରଦାନ ଫଳରେ ଜନସାଧାରଣଙ୍କର ଚିନ୍ତାଧାରା ସ୍ତିମିତ ନୁହେ । ନୂତନ ଜୀବନର ଅବବୋଧ ପାଇଁ ସେମାନେ ଅତି ବ୍ୟାକୁଳ । ମାତୃଭାଷାରେ ଗୁଚ୍ଛଗୋଷ୍ଠି ଦୈନିକ ପତ୍ରିକାର ବହୁଳ ପ୍ରଚାର ଏ ଯୁଗରେ ଜନଜାଗରଣ ଓ ଜନଶିକ୍ଷା ପାଇଁ ଯଥେଷ୍ଟ ପ୍ରେରଣା ଦେଉଅଛି । ଶିକ୍ଷା ଅନୁଷ୍ଠାନର ଉତ୍ଥାନ ଫଳରେ ଶ୍ରମିକର ଜୀବନର ମାନଦଣ୍ଡ କିଞ୍ଚିତ ଉନ୍ନତ ହୋଇଅଛି । ତେଣୁ ସେ ଆଜ ତାହାର ଅର୍ଜିତ ଅର୍ଥର କେତେକାଂଶ ଶିକ୍ଷା ଓ ସାହିତ୍ୟ ଦିଗରେ ବ୍ୟୟ କରିବାକୁ କୁଣ୍ଠିତ ନୁହେ । ତେଣୁ ଆମ ଦେଶରେ ଶିକ୍ଷାର ପ୍ରସାର ପାଇଁ ଯେପରି ଆଗ୍ରହ ପ୍ରକାଶ ପାଇଅଛି ପତ୍ରପତ୍ରିକା ଏବଂ ପ୍ରକାଶିତ ପୁସ୍ତକର ପ୍ରଚାର ପାଇଁ ମଧ୍ଯ ସେତକ କ୍ଷେତ୍ର ପ୍ରସ୍ତୁତ ହୋଇଅଛି ।

## ସରକାରୀ ପୃଷ୍ଠପୋଷକତା ଓ ପ୍ରଚାର ବିଭାଗ

ବର୍ତ୍ତମାନର ସରକାରଙ୍କ ଆନୁକୂଲ୍ୟରେ ବହୁ ପୁସ୍ତକ ପ୍ରକାଶିତ ଅଥବା ପୁରସ୍କୃତ ହେଉଅଛି । ବିଭିନ୍ନ ପ୍ରକାର ପୁସ୍ତକ ରଚନାର ମାନବୃଦ୍ଧି କରିବାପାଇଁ ସରକାରଙ୍କ ତରଫରୁ ଉତ୍ସାହ ପ୍ରଦାନ କରାଯାଉଅଛି । ସାହିତ୍ୟର ବିକାଶ ଦିଗରେ ଅଧିକ ଯତ୍ନବାନ ହେବାପାଇଁ ସରକାରୀ ପ୍ରଚେଷ୍ଟାରେ ସାହିତ୍ୟ ଏକାଡେମି ଭଳି ଅନୁଷ୍ଠାନ କାର୍ଯ୍ୟ କରୁଅଛି । ଏହାଛଡ଼ା ସରକାରଙ୍କ ବିଭିନ୍ନ କର୍ମ ବିଭାଗ ମାଧ୍ୟମରେ ଅସଂଖ୍ୟ ପ୍ରଚାର ପତ୍ର ପୁସ୍ତିକା ଏବଂ ପତ୍ରପତ୍ରିକା ପ୍ରକାଶିତ ହେଉଅଛି । ବଣ୍ୟ ପ୍ରଚାରମୂଳକ ରଚନା ସାହିତ୍ୟର ମାପକାଠିରେ ଗ୍ରାହ୍ୟ ନ ହେଲେହେଁ ଏ ଯୁଗର ସାହିତ୍ୟ ସୃଷ୍ଟିରେ ତାହା ପ୍ରକାରାନ୍ତରେ ପ୍ରଭାବିତ କରୁଛି ବୋଲି ସ୍ୱୀକାର କରିବାକୁ ହେବ ।

## ଆଧୁନିକ ସାହିତ୍ୟର ନୂତନ ରୂପ

ସଂଖ୍ୟା ଦିଗରୁ ନହେଲେହେଁ ମୂଲ୍ୟବୋଧ ଦୃଷ୍ଟିରେ କେତେକ ବିଭାଗରେ ଓଡ଼ିଆ ସାହିତ୍ୟ ଅନ୍ତତଃ ଅବହେଳିତ ନୁହେଁ । ସ୍ୱାଧୀନତା ପର ଓଡ଼ିଆ ସାହିତ୍ୟରେ ଅନୁବାଦ । ସମାଲୋଚନା, ବିଜ୍ଞାନ ଏବଂ ଭ୍ରମଣ କାହାଣୀର ଉଲ୍ଲେଖଯୋଗ୍ୟ ସଂଯୋଗ ହୋଇଅଛି । ସ୍ୱାଧୀନଦେଶର ବହୁ ସରକାରୀ କର୍ମଚାରୀ, ଶିକ୍ଷକ, ଛାତ୍ର ଓ ଗବେଷକ ବିଦେଶ ଭ୍ରମଣର ସୁଯୋଗ ଲାଭ କରି

ସେମାନଙ୍କର ମହାର୍ଘ ଅନୁଭୂତିକୁ ଲିପିବଦ୍ଧ କରିବା ଫଳରେ ଆମର ଭ୍ରମଣ ସାହିତ୍ୟ ବିଭାଗଟି କ୍ରମଶଃ ସମୃଦ୍ଧ ହେଉଅଛି । ସେହିପରି ଉତ୍କଳ ବିଶ୍ୱବିଦ୍ୟାଳୟ, ବିଭିନ୍ନ ସାହିତ୍ୟିକ ଅନୁଷ୍ଠାନ, ଶାନ୍ତିନିକେତନର ଓଡ଼ିଆ ଗବେଷଣା ବିଭାଗ, ଓଡ଼ିଆ ମିଉଜିଅମ ଏବଂ ସର୍ବୋପରି ଝଙ୍କାର ଏବଂ ଡଗର ପତ୍ରିକା ମଧ୍ୟରେ ବହୁ ଉଚ୍ଚକୋଟୀର ଐତିହାସିକ, ସାଂସ୍କୃତିକ, ଅର୍ଥନୈତିକ ସମାଲୋଚନା ଓ ଗବେଷଣାମୂଳକ ରଚନା ପ୍ରକାଶିତ ହୋଇ ଜାତୀୟ ସାହିତ୍ୟର ଉନ୍ନତି ବିଧାନ କରିଅଛି । ବିଶେଷତଃ ବିଜ୍ଞାନ ସଂପର୍କୀୟ ପୁସ୍ତକ ସଂକଳନରେ ବିଜ୍ଞାନ ପ୍ରଚାର ସମିତିର ପ୍ରଚେଷ୍ଟା ଉଲ୍ଲେଖଯୋଗ୍ୟ । ସେହିପରି ଗତ କେତେବର୍ଷ ମଧ୍ୟରେ ବିଶ୍ୱସାହିତ୍ୟର ବହୁ ଉଚ୍ଚକୋଟୀର ଉପନ୍ୟାସ, ନାଟକ, କାହାଣୀ, କାବ୍ୟ, କବିତା ପ୍ରଭୃତି ଓଡ଼ିଆଭାଷାରେ ଭାଷାନ୍ତରିତ ହୋଇ ନୂତନ ଆଶାର ସଞ୍ଚାର କରିଅଛି ।

ଆଧୁନିକ ସାହିତ୍ୟର ଅନ୍ୟ ଏକ ବିଭାଗ ହେଉଛି ଶିଶୁସାହିତ୍ୟ । ଏ ଦିଗରେ ଆଶାତୀତ ସଫଳତା ହାସଲ ହୋଇ ନଥିଲେହେଁ ସୃଷ୍ଟି ଦିଗରୁ ଉଦ୍ୟମ ମନ୍ଥର ହୋଇ ନାହିଁ । ଏକାଦିକ୍ରମେ ଏକାଧିକ ସୁରୁଚି ପୂର୍ଣ୍ଣ ଶିଶୁ ପତ୍ରିକା ପ୍ରକାଶିତ ହେବା ସୌଭାଗ୍ୟର କଥା । ଏତଦ୍‌ବ୍ୟତୀତ ବିଭିନ୍ନ ଶିରୋନାମାରେ ଶିଶୁ-ଉପଯୋଗୀ କାହାଣୀ, ଗଳ୍ପ, କବିତା, ଜୀବନୀ, ଜ୍ଞାନବିଜ୍ଞାନ ଇତ୍ୟାଦି ସଂପର୍କୀୟ ପୁସ୍ତକ ପ୍ରକାଶିତ ହେଉଅଛି । କେତେବର୍ଷତଳେ ଏ ଦିଗରେ ଆମ ସାହିତ୍ୟରେ କିଛି ନଥିଲା କହିଲେ ଚଳେ । ଅନ୍ତର୍ଜାତିକ ସାହିତ୍ୟ ସହିତ ସମାନ ପଦକ୍ଷେପ କରି ଆଧୁନିକ ଓଡ଼ିଆ ସାହିତ୍ୟରେ ସମସ୍ୟା ମୂଳକ ଏବଂ ମନସ୍ତାତ୍ତ୍ୱିକ ରଚନାର କ୍ରମଶଃ ବିକାଶ ସମ୍ଭବ ହେଉଅଛି ।

**ଆମର ସାଂପ୍ରତିକ ସମସ୍ୟା**

ଆଧୁନିକ ସମାଜରେ ବହୁପରିମାଣରେ ଦୋଷଦୁଷ୍ଟ, ଯୌନବିକାରଗ୍ରସ୍ତ ଓ ଅତ୍ୟନ୍ତ ଶସ୍ତା ମନୋଭାବ ପୂର୍ଣ୍ଣ ଉପନ୍ୟାସର ବହୁଳ ପ୍ରଚାର ହେଉଅଛି । ଆଧୁନିକ ଜୀବନର ବିଚଳିତ ଓ ବିକାରଗ୍ରସ୍ତ ମନୋଭାବ ପାଇଁ ଏ ପ୍ରକାର ସାହିତ୍ୟ ଓ ଉଚ୍ଛୃଙ୍ଖଳ ଭାବଦ୍ୟୋତକ ଚଳଚିତ୍ର ବହୁ ପରିମାଣରେ ଦାୟୀ ।

ଆଧୁନିକ କବିତା ଅତ୍ୟନ୍ତ ଦୁର୍ବୋଧ । ସମ୍ଭବତଃ, ଅତିରିକ୍ତ ପରିମାଣରେ ଗୌଣ ମନୋଭାବ, ଅନୁକରଣ ପ୍ରବୃତ୍ତି, ପାଶ୍ଚାତ୍ୟ ମାପକାଠିରେ ଆଧୁନିକତାର ବିଚାର ମୋହ ଯୋଗୁ ଆଧୁନିକ କବିତାର ଲେଖକଗଣ ଦୁର୍ବୋଧ ହେବା ସଙ୍ଗେ ସଙ୍ଗେ ଅର୍ଥହୀନ ମୂଳକ ରଚନା ପାଇଁ ଅଗ୍ରଣୀ ହୁଅନ୍ତି ।

ଅଳ୍ପ କେତେକ ପଣ୍ଡିତ କବିଙ୍କୁ ଛାଡ଼ିଦେଲେ ଅଧିକାଂଶ ଆଧୁନିକ-ମନା କବି କେବଳ ବିସ୍ତୃତଭ୍ରଷ୍ଟ ହୋଇଛନ୍ତି ବୋଲି କୁହାଯାଇପାରେ ।

ଆଧୁନିକ ଜୀବନ ଅତ୍ୟନ୍ତ କଠିନ । ଜୀବନସଂଗ୍ରାମର ଘନଘଟା ମଧ୍ୟରେ ବହୁ ତରୁଣ ଲେଖକର ସବୁଜ ସ୍ୱପ୍ନ ମ୍ରିୟମାଣ ହୋଇଯାଉଛି । ନିରବଚ୍ଛିନ୍ନ ସାଧନା ସମ୍ଭବପର ହେଉନାହିଁ । ଜୀବନର ମାନଦଣ୍ଡ ବୃଦ୍ଧି ଏବଂ ଅର୍ଥ ସର୍ବସ୍ୱ ସମାଜରେ ପ୍ରତିଷ୍ଠାର କାମନା ବହୁ ପ୍ରବୀଣ ଓ ଶକ୍ତିଶାଳୀ ଲେଖକଙ୍କୁ ସାରସ୍ୱତ ପୀଠରୁ ଟାଣିନେଇ ଲକ୍ଷ୍ମୀଙ୍କର ଅନୁଗତ୍ୟ ସ୍ୱୀକାର କରିବାର ଦେଖାଯାଉଅଛି ।

ରାଜନୀତି, ପ୍ରଗତିମୂଖୀ ସହଜ ମନୋଭାବ ସାହିତ୍ୟିକର ଜୀବନକୁ ଦିଗ୍‌ଭ୍ରାନ୍ତ କରୁଅଛି । ସମୟେ ସମୟେ ଜାତିଅଣ ମନୋଭାବ ପବିତ୍ର ସାହିତ୍ୟ ସାଧନାରେ ବିସ୍ତୃତ ବିରୋଧ ଉତ୍ଥାପିତ କରିବା ଜଣାଯାଏ । ତେବେ ଏ ସବୁ ବିସମ୍ବାଦ ମଧ୍ୟରେ ଓଡ଼ିଆ ଲେଖକର ପ୍ରାଣରେ ଆତ୍ମବିଶ୍ୱାସ ଫେରି ଆସୁଛି । ଏ ଦେଶରେ ଶିକ୍ଷା ଓ ସଂସ୍କୃତିର ବିକାଶ ପାଇଁ ସ୍କୁଲ, କଲେଜ, ପତ୍ରପତ୍ରିକା ଅଥବା ପୁସ୍ତକାଳୟର ଯେତିକି ଆବଶ୍ୟକତା ରହିଛି, ତାହାଠାରୁ ଅଧିକ ପ୍ରୟୋଜନ ପୁସ୍ତକ କିଣିବାର ମନୋଭାବ । ତେଣୁ ଆଜ ଘରେ ଘରେ ପୁସ୍ତକ ଆନ୍ଦୋଳନ ଅବଶ୍ୟକ ।

ଆଧୁନିକ ସମାଜର ବହୁ ନ୍ୟସ୍ତ ସ୍ୱାର୍ଥ ଅନୁଷ୍ଠାନ ଓ ଶକ୍ତିଶାଳୀ ବ୍ୟକ୍ତି ଅର୍ଥର ପ୍ରଲୋଭନ ଦେଇ ବାଣୀପୁତ୍ରଙ୍କୁ ବନ୍ଦୀ କରିବାକୁ ବ୍ୟଗ୍ର । ଅବଶ୍ୟ ଦାରିଦ୍ର୍ୟର ପୀଡନ ମଧ୍ୟରେ ମନ ସଂକୁଚିତ ହେଲେ ଏ ପ୍ରକାର ଲାଳସା ଲେଖକଙ୍କୁ ପରାଜିତ କରେ । ଲେଖକର ଜୀବନରେ ଅର୍ଥ ତ ଆବଶ୍ୟକ । କାରଣ ସେ ଏହି ଅର୍ଥ ସର୍ବସ୍ୱ ବସ୍ତୁବାଦୀ ସମାଜର ଜଣେ ଚେତନଶୀଳ ସଭ୍ୟ । ମାତ୍ର ସାହିତ୍ୟର ସୃଷ୍ଟି ବିକାଶପାଇଁ ଲେଖକ ଅର୍ଥ ଚାହେଁ ନାହିଁ, ସେ ଚାହେଁ ସ୍ୱୀକୃତି ଓ ସମ୍ମାନ । ଯେଉଁ ରାଷ୍ଟ୍ର ଓ ସମାଜ ତାର ଲେଖକଙ୍କୁ ଯେତିକି ପରିମାଣରେ ଏହି ସ୍ୱୀକୃତି ଓ ସମ୍ମାନ ପ୍ରଦାନ କରିଛି, ତାହାର ବିକାଶରେ ସେ ସମାଜ ଓ ରାଷ୍ଟ୍ର ଲେଖକର ସର୍ଜନା ସ୍ୱପ୍ନରେ ତେତିକି ପ୍ରାଣବନ୍ତ ଓ ଶକ୍ତିଶାଳୀ ହୋଇଅଛି ।





# ସୁରଭି

କୁମାରୀ ତୁଳସୀ ଦାସ

ଘନ କୁଆସାକି ଲିଭିଯିବ ସତେ ଲିଭିଯିବ ?
ଆଲୋକେ ଭାସିବ ଧରଣୀ ?
ଇନ୍ଦ୍ରଧନୁର ବର୍ଣ୍ଣ ବିଭା କି ବିରାଜିବ ?
ହସି ଯିବ ଘନ ତରଣୀ ?
ଶେଫାଳୀ ସୁରଭି ସରାଗେ କି ସତେ ବହିଯିବ ?
ପୁଷ୍ପିତ ହେମ ସରଣୀ
ଅଖିଳ ସଜଳ ଛଳ ଛଳ ଆଖି ଶୁଖିଯିବ ?
ଲିଭିଯିବ ପ୍ରେତ କରଣୀ ?
ଜଡ଼ତା, ହୀନତା ଜନ-ଜଗତ କି ପାଶୋରିବ ?
ଜଳିବ ନବୀନ ତରଣି ?
ପ୍ରତିଭାର ସତେ ଜଳିବ ପୂଜାର ସୁଜାଗର ?
ଧନ୍ୟ ହୋଇବ ଲେଖନୀ ?



# ସ୍ମୃତିର ପୀଡ଼ା

ଶ୍ରୀ ଦୁର୍ଗାମାଧବ ମିଶ୍ର



ନିଶୀଥର ଉପାନ୍ତେ ଜାଗରେ
ମନେପଡ଼େ ଆଜି ମନେ
ଜୀବନର ଯେତେ କ୍ଳାନ୍ତି ମୋହରେ ଅଧୀରତା
ଅନ୍ତର ଉଚ୍ଛ୍ୱାସ ଢାଳେ ପ୍ରାଣହୀନ ନିର୍ମମ ସମାଧି
ବନ୍ଧୁର ସଂଧାନୀ ଆଖି
ଚିତ୍ତ ଆଜ ରଙ୍ଗ ବାନ୍ଧି ବାଧା
ତୃଷାମୟ ସବୁଜ ପ୍ରାନ୍ତରେ—
କେତେମାଏ ଜ୍ୟୋତ୍ସ୍ନା ସ୍ନିଗ୍ଧ ରାତ
ନଜପାଏ ଶିଥିଳତା ମନର ମ୍ଳାନିମା
ଭୁଲେଁ ଆଜ ପ୍ରେୟସି ଗୋ ଅବସାଦ ମଳାର ଭଙ୍ଗିମା
ପ୍ରଜ୍ଜ୍ୱଳ ପୂରେ ନାଇଁ ନେଣ୍ଡୁ ରେଣୁ ଚନ୍ଦ୍ରିକା କାରେଣି
ଦୋସ ପୁଲ ଉଲ୍ଲସେନ ନିଃସହାୟ ଭଙ୍ଗିକରେ ଦେଖି
ଆଖିପତା ନଇଁପାଏ ବିରସ ଯେ ଧ୍ରଦର୍ଶନୀ ନେହ
ତୁମେ ଛାହା ଦୃଷ୍ଟିବନ ବୁଝାଇଲେ ଅନେଗ ଯହତ୍ପ୍ର
ମନେ ପଡ଼େ
ସେ ଦିନ ସେ ଅଶ୍ଳୀଳ ସକାଳେ
ଆସିଥିଲ ତୁମେ ସଣୀ ଛନ୍ଦଭଙ୍ଗୀ କେନ୍ଦ୍ରାଢ ଅନ୍ତରେ
କଳ୍ପନାର ଫୁଲ-ହଁସ ନୂଆ ହୋଇ ଉଠୁଥିଲ କଲି
ଶିଖାତାର ହଲି ହଲି
ଗ୍ରାସୁଥିଲ ଧୀରେ···ଧୀରେ···
ଧାଗଙ୍ଗନା ନେହ ପୟୋଧରେ
ଆଖିରେ ରଞ୍ଜନ ରଶ୍ମି ଅଧରେ ବିଦ୍ୟୁତ୍
ମନର ସେ ମୋନାଲିସା କାଠଦଷ୍ଟ ଅଙ୍କ
ଶିଳ୍ପୀ ଖାଲି ଧ୍ୟାନରେ ବୃଥା ଖୋଜେ ଅଙ୍କ
ଅଙ୍କଗତ ବୀଣା ତାର ଛିଣ୍ଡି ବାନ୍ଧି ଯାଉଛଣି ଦୂରେ
ଅଦ୍ୟାବଧି ବୁଲୁଥିଲ ଶୂନ୍ୟରେ
ମଳୟର ହିଲ୍ଲୋଳେ ହିଲ୍ଲୋଳେ

ମୂର୍ଚ୍ଛନା ଭରା ନୂଆ ଜୋଛନା ରାତି
ନିଖିଳ ଦୂରରେ···ଅତି ଦୂରରେ
ମୋର ଅନ୍ତର ଯାମିନୀ କୋଳରେ
ସମ୍ମୋହିତା କଳ୍ପନା ଏ···ଘୁମ୍ପୁମା ଏ ଦୂରେ ଝଲ ମଲ
ଅବସାଦ—ଭରା କେତେ ଚୁମ୍ବେଇ ମୁଁ ଯା ତୁମ ଓଷ୍ଠାଧରେ
ଜୀବନର ସ୍ୱପ୍ନାଳିକା ନାହିଁ ପ୍ରତିଫଳେ
ତୁମର କୁଙ୍କୁମ ନାଲି ପୀତ ଗଣ୍ଡେ କରେ ଉପହାସ
ଏଇ ତୁମ ସ୍ନେହ ଇତିହାସ······
ନଭାଗାର ତେଜ କାଟି ଗୁଲ୍ ଗୁଲ୍ ନଭ
ବାଧିଲଣି ଜୀବନର ଦୁର୍ବହ ଏ ଭାର
ଦେବଦାରୁ ପତ୍ରଗୁଚ୍ଛେ ଏବେ ମଧ୍ୟ କୁଜଇ କୋକିଳ
ମୋହକ ଫୁଲର ତେଜ ଲେଟିଯାଏ କାନନକା କୋଣେ
ସଞ୍ଚରଣୁ ମନ ଆଶା କାଏ ପୁଣି ଛେଦଭୁ କୁଠାରେ
କାଏ ପୁଣି ଜାଣି ଶୁଣି ଲୁଚଯାଏ ଢମିରତ ନଭେ
ମନେ ପଡ଼େ ଏବେ
ଜୀବନର କ୍ଳାନ୍ତ ତେଜ ପଛାଡୋଳି ଅନାଏଁ ମୁଁ ଦୂରେ
ଅତୀତର ଗହନ ଅଂଧାରେ···
ଶୁଣୁଚି ମୁଁ କହୁଚ ଗୋ; ବର୍ତ୍ତମାନ ଅନାଇଛ କାହିଁ
ମଉଅଛି ବିଶାଳ ଦୁନିଆ
ଯାନ୍ତ୍ରୀକରେ ଚଉଅଛି ଶସ୍ୟଶ୍ୟାମ ସବୁଜ ଧରଣୀ ।
ଅତୀତକୁ ଦୂରେ ଠେଲି ଅଗ୍ରସର ହୁଅ ଏ ସଜନୀ
ନା, ନା, ପାରିବନି··
ଚନ୍ଦ୍ରାଲୋକ କେବେ ମୋ'ର ଶ୍ରବେ ନାହିଁ ଶୁଭ ଆଗମନୀ
ତୁମେ ଶୁଣ ବଂଶୀବାର-ଜୀଇଁବାର-ମହାନ ସଂଗୀତ
ମାଂସର ତାତଲ ମୋହ ନିତ କରେ ତୁମକୁ ବିଦ୍ରୂପ
ମୁଁ କିନ୍ତୁ ଗୁହାଁର ଖାଲି ଅଶ୍ରୁ କେବେ ବିଦାୟର ବେଳା
ମୋ ପାଇଁ ଶାଶ୍ୱତ ଯୋହ୍ନ ଦୂର ସ୍ନିଗ୍ଧ ଛାୟା
ଜଳାଜଳି ଅନାଏ ସେ କେବେ ମୋର ଶରକାଳ ଲାଗି
ମୋ ଉତର ପଶ୍ନ ଆଜ ପୁଚ୍ଛିଫିଟି ଜହ୍ନ ନାଇଁ ଜାଗି···






## ମାଳିକା

ହରିପ୍ରିୟା
ବ
ଧା
ର

ଶତ ପାଠଖାଟୀ ଅଜ ସୁନାର ଗହଣା
ନିତ ଜଳିଯାଏ ଶତ ଛନୂର ସାଥିରେ,
ଇଟାର ସଉଧ ଅଜ ଅଶାର ଝରଣା
ନିତ ମିଶିଯାଏ ଶତ ମନର ଧୂଳିରେ ।

ତଥାପି ମଣିଷ ଖୋଜେ ନାଲ୍ଅ ଭକତ
ବିଳାସ ଖେତରେ ରଚେ ସପନ ଫସଲ,
ମନ ବାଲୁଚରେ ହଜେ ଘାସର ମରତ
ଜୀବନେ ନୁହଇ ଖାଲି ବଂଚିବା ଅସଲ ।



## ଗଣିତ

ସ୍ନେହଲତା
ମ
ହା
ନ୍ତି

ବୋଟଂ ଜନ୍ମର ଅଲ୍ଅ ଅଣ୍ଟିନର  ଖାଇବ ଫରଦେ
ବୋତଲେ ପ୍ରଣାମ ହସ ଖୁସି ନାଚ  ଗୀତ ପଦେ ଅଧେ,
ମହଣେ ପବନ ପୁଣି ମନେ ଅସେ ଦୁଇଇଞ୍ଚ ସ୍ୱତ
ଏ ସମଷ୍ଟି ମଧ୍ୟେ କୁମାର ପୂର୍ଣ୍ଣିମା ଜଠିନ କ୍ଷ ମାତ୍ର ।

ମନେଖର ମିଛରେ ଏଇନା ସମୁଦ୍ରେ ଅଭିମାନ ଭର
ନଟରାଜରେ ଖାଦନ୍ତି ଏଖାକୀ ବସି ଅଖିଲ୍ଦ ତାଳ,
ବଂଧୁମାନେ ଖନ୍ଥ ମତେ ପଗୁରଲେ  ଦଅନ୍ତି ବୁଝାଇ
ହୁଅନ୍ତାନଙ୍କ ହସ ଅବା ଭୁଲ ବୁଝିବା ଖନ୍ଥ
ଖହନ୍ତି ଯଦି ମୁଁ, ହଜିଗଲ୍ଣି ତମ ମନର ଖଣେଇ ।



## ଚେତନା

ନିରୁପମା ନରେନ୍ଦ୍ର ସିଂହ

ବିଗତ ଦିନର ଇତିହାସ ଯାହା କୁହ
କେଉଁ ଭରସାରେ ପଢ଼ିବରେ ତାରେ ଅଜ୍ଞ,
କୋଣାରକ ବୁକେ ଢାଳିଏ ଆଖିର ଲୁହ
ଏ ଜାତିର ଗତ ସ୍ମୃତିରେ ଯିବ ହଜି ।

ଏଇ ପୃଥିବୀର ଭୂଗୋଳ ମୁଖର ଆଗେ
ମଶାଣି ଭୂଇଁର କଙ୍କାଳ ରୂପ ଧରି,
ପ୍ରାଣ ତଳେ ଖାଲି ପୁରାଣି ବିଭବ ଜାଗେ
ନିଜ ଗ୍ଲାନି ଭୟେ ଆତ୍ମା ଯାଏରେ ମରି ।

## ମମତା

ଶରତ ଦାସ

ଆଶାର ବଉଳୀ ଆଖିରେ ରଚୁଛି ଯାହା
ସପନର ସୁରା ଅନମନେ ନିତ ପିଇ,
ବିଳାସର ଲାଗି ବିଫଳ ହୁଏରେ ସାହା
ଅକାଳରେ ସିନା ଅଧନେ ପଡ଼ିବ ଶୋଇ ।

ଜୀବନ ଯଦରେ ପାଣିର ଫୋଟକା ସମ
କ୍ଷଣିକର ମୋହ ଭୁଲାଇ ପାରେକି ମତେ
ମନରେ ଜାଗିଲେ କୋଟିଏ ପ୍ରାଣର ସ୍ନେହ
ମଣିଷ କାଆଁରେ ମନ୍ଦର ଯିବ ସତେ ...?





## କଳାର ଗତି

ବାସ୍ତବଧର୍ମୀ କଳା ବହୁକାଳ ବ୍ୟାପି ଗତାନୁଗତିକ ଭାବରେ ଦେଖା ଦେଇଥିଲା । ବହୁ ସୁଦକ୍ଷ ଶିଳ୍ପୀ ରୂପମୟୀ ପ୍ରକୃତିର ବହୁ ବିଚିତ୍ର ଦୃଶ୍ୟକୁ ରୂପ ଦେଇ ଅନବଦ୍ୟ ସୃଷ୍ଟି କରି ଯାଇଛନ୍ତି । ପାଶ୍ଚାତ୍ୟ ଓ ଭାରତୀୟ କଳାକୁ ପୃଥକ କରି ଗଭୀର ବିଶ୍ଳେଷଣ କଲେ ଅନୁଭୂତ ହୁଏ, ଭାରତୀୟ ଶିଳ୍ପୀ କେବଳ ବାସ୍ତବ ଭୂମିକୁ ଅନୁକରଣ ନ କରି ଅନେକ କ୍ଷେତ୍ରରେ ପ୍ରତୀକ ଦ୍ୱାରା ବାସ୍ତବ ସହିତ ଭାବର ସଂଯୋଗ କରି ଏକ ଅଭିନବ ରମଣୀୟ କଳା ସୃଷ୍ଟି କରୁଥିଲା । ଏ ସମୂହର ପ୍ରକୃଷ୍ଟ ଓ ସୁସ୍ଥ ଉଦାହରଣ ଭାରତୀୟ ମନ୍ଦିର ଓ ହର୍ମ୍ୟମାନଙ୍କରେ ଦେଖିବାକୁ ମିଳେ । ଭାରତୀୟ ହିନ୍ଦୁ ପ୍ରକୃତ ମନ୍ଦିରର ସୌସାଦୃଶ୍ୟ ବା ମୌଳିକତା ରକ୍ଷା କରିବା ସଙ୍ଗେ ସଙ୍ଗେ ସ୍ୱକୀୟ ହୃଦୟ ମୃତ୍ତା ଓ ପଶୁ ପ୍ରବୃତ୍ତିର ଅନନ୍ୟ ସାଧାରଣ ତୀବ୍ରତା ଯେଉଁ ଏକ ଲୋଭନୀୟ ସୃଷ୍ଟିରେ ପରିଣତ ହୋଇ ଅଛି । ତାହା ଯେ କୌଣସି ମନ୍ଦିର ଦ୍ୱାର ଦେଶରେ ଦେଖିବାକୁ ମିଳେ । ତାହାକୁ ଭାରତୀୟ କଳାର Symbolism କୁହାଯାଏ । କିନ୍ତୁ ବର୍ତ୍ତମାନ କେତେକ ଅଗ୍ରଗାମୀ ଶିଳ୍ପୀଦଳ ରୂପ ବା Form କୁ ଭାଙ୍ଗି ଯେ ଭଳି Abstract Art ସୃଷ୍ଟି କରିବାରେ ବ୍ରତୀ ହୋଇଛନ୍ତି ତାହା କେତେଦିନ ପର୍ଯ୍ୟନ୍ତ ଶ୍ରେୟ ଏବଂ ପ୍ରେୟ ହୋଇ ରହିବ ତାହା କ୍ଷଣକେ କଳ୍ପନାରେ ରୂପନିଏବ ବା ମନ୍ଦିରରେ ପ୍ରକାଶ ସମ୍ଭବ ହୁଏନା । କଟକର ଚତୁର୍ଥ ଜାତୀୟ କଳା ପ୍ରଦର୍ଶନୀରେ ଯେଉଁ ସବୁ ବିଚିତ୍ର ସୃଷ୍ଟି ଆମର ଦୃଷ୍ଟିଗୋଚର ହୋଇଥିଲା ତାହା ଯେ କୌଣସି ଦର୍ଶକର ମନରେ ସନ୍ଦେହ ଓ ବିସ୍ମୟ ଆଣିଥିବ । ସେ ପର୍ଯ୍ୟାୟରେ ପରବର୍ତ୍ତୀ ସଂଖ୍ୟାରେ ସବିଶେଷ ଆଲୋଚନା ରୂପ ନେବ ।

## ନୃତ୍ୟକଳା

ନୃତ୍ୟକଳା ଏକ କଠିନ ସାଧନା—ନୃତ୍ୟ ବିଦ୍ୟା ଶିକ୍ଷାରମ୍ଭ ପୂର୍ବରୁ ନୃତ୍ୟ ଶିଳ୍ପୀର ଅଙ୍ଗ ଗଠନ କି ଭଳି ହୋଇଥିବା ଉଚିତ ସେ ସମ୍ପର୍କରେ ଶାସ୍ତ୍ରଗତ ନିର୍ଦ୍ଦେଶ ଦିଆଯାଇଛି । ଆଧୁନିକ ବାତାବରଣରେ ଦେଖାଯାଏ ମାସ ତିନି ଖେଳଭଳି ଅଥବା ବ୍ୟାୟାମ ଶିକ୍ଷା ଭଳି ଅଧିକାଂଶ ନୃତ୍ୟ ଶିକ୍ଷା କରିବାକୁ ଅଗ୍ରଭିଳି ହେଉଛନ୍ତି । ଅବଶ୍ୟ ଏହା ଏକ ଶୁଭଲକ୍ଷଣ—ନୃତ୍ୟ ସମ୍ବନ୍ଧୀୟ ଭଙ୍ଗୀ ମୁଦ୍ରା ଓ ଭାବ ଗୁଡ଼ିକୁ ଭଲ ଭାବରେ ଆୟତ୍ତ ନ କଲେବି ନୃତ୍ୟ ଦର୍ଶନରେ ସାଧାରଣ ଦର୍ଶକ ମୁଗ୍ଧ ହୋଇଯାଇ ପାରନ୍ତି । କିନ୍ତୁ ଯେଉଁମାନଙ୍କର ନୃତ୍ୟକଳାରେ ଅଧିବାସୀୟ ଅଛି ସେମାନେ ଏହାକୁ ବିଡ଼ମ୍ବନା ବୋଲି ମନେ କରିବା ସ୍ୱାଭାବିକ୍ । ଉଦାହରଣ ସ୍ୱରୂପ ତାଣ୍ଡବ ଓ ଲାସ୍ୟ ବହୁବିଧ ପ୍ରକାରର ଅଛି । ଏଗୁଡ଼ିକର ଅର୍ଥ ଯେପରି ସୃଷ୍ଟିକୃତ ହେବ ସେଥିପାଇଁ ଗ୍ରୀବାର ଦୋଳନ, ଚକ୍ଷୁଚାଳନ, ଅଙ୍ଗୁଳିର ମୁଦ୍ରା ଓ ପଦର ଭଙ୍ଗୀ ଗୁଡ଼ିକ ବିଷୟରେ ଶାସ୍ତ୍ରାନୁମୋଦିତ ନ ହେଲେ ଏହା କଦାପି ପୂର୍ଣ୍ଣାଙ୍ଗ ହୋଇ ନପାରେ ।

ସଙ୍ଗୀତ ମଞ୍ଚ ପରିସ୍ଥିତି ଓ କଳାକାରଙ୍କ ସମ୍ପର୍କରେ ପରବର୍ତ୍ତୀ ସଂଖ୍ୟା ମାନଙ୍କରେ ଆଲୋଚିତ ହେବ ।

## ଆଧୁନିକ ସାହିତ୍ୟରେ (କବିତା)

ପାଶ୍ଚାତ୍ୟ ଦୃଷ୍ଟିକୋଣର ପ୍ରଭାବ ଓ ଧାରା ଏ ଦେଶର କବିତାରେ ବହୁଳ ମାତ୍ରାରେ ବହୁକ୍ଷେତ୍ରରେ ଦେଖିବାକୁ ମିଳୁଛି କିନ୍ତୁ ପାଶ୍ଚାତ୍ୟ କବିମାନଙ୍କର ପ୍ରକାଶ ଭଙ୍ଗୀ ଅନୁରୂପ ନୂତନ ଭାବ ମଧ୍ୟ ଗମ୍ଭୀର କିନ୍ତୁ ପ୍ରାୟଶଃ ଏ ଦେଶରେ ସେ ଧରଣର ଉଚ୍ଚକୋଟିର ଅର୍ଥବାହୀ କବିତାର ସୃଷ୍ଟି ନାହିଁ । ଗଦ୍ୟ କବିତା ଲେଖିବାକୁ ହେବ ବୋଲି କବିତାର ଆରମ୍ଭ କରିବା କବି ପକ୍ଷରେ ଅନୁଚିତ ଭଳି ମନେ ହୁଏ । କବି ପ୍ରେରଣା ନ ପାଇ କବିତା ଲେଖିବସିଲେ ତା' ଭିତରେ ନା ମିଳେ, ଛନ୍ଦ ନା ମିଳେ ଶବ୍ଦର ମାଧୁରୀ, ନା ମିଳେ ଭାବ···

ଅବଶ୍ୟ ମଣିଷର ଏହା ଗୋଟାଏ ଅଦମ୍ୟ ପ୍ରବୃତ୍ତି କର୍ମ ମଧ୍ୟରେ ଜୀବନକୁ ଜୁଡ଼ାଇ ରଖିବା ଏବଂ କଳ୍ପନା କରି ନୂତନପରିବେଶ ସୃଷ୍ଟି କରି ବଞ୍ଚିବା । କିନ୍ତୁ ଅସୁନ୍ଦର ନୂତନତାରେ ଜୀବନୀ ଶକ୍ତି ନଥାଏ । ଅନେକ ବର୍ତ୍ତମାନର ନୂତନ ସୃଷ୍ଟିତଳେ ସୁନ୍ଦର ଅସୁନ୍ଦର, ଚିରନ୍ତନ ବା କ୍ଷଣିକ ଇତ୍ୟାଦି ପ୍ରତି ଦୃଷ୍ଟି ନ ଦେଇ ଜୀବନକୁ ଉପଭୋଗ୍ୟ କରିବାକୁ ବନ୍ଧନ ସମ୍ଭୂତ ଢାଲ ଦେଇ କଛି ନା କଛି ସୃଷ୍ଟି କରିବାକୁ ଭଲ ପାଉଛନ୍ତି । ଆଜିର ପଦ୍ୟ ସାହିତ୍ୟ ଏକ ଅଦ୍ଭୁତ ପରିଚୟ ଦିଏ । ଅସୁନ୍ଦର ଅସାମଞ୍ଜସ୍ୟ ଏବଂ ଅବାସ୍ତବ ସୃଷ୍ଟିରେ ମଣିଷର ତୃପ୍ତି ବେଶୀ । ମନେହୁଏ ପଦ୍ୟ ସାହିତ୍ୟ ବୋଧେ ତା'ର ଉନ୍ନତିର ଚରମସୀମାରେ ଅନେକ ଦିନରୁ ପହଞ୍ଚି ସାରିଛି । ତେଣୁ ଇତିହାସର ଉତ୍ଥାନ ପତନ ଭଳି ପଦ୍ୟ ସାହିତ୍ୟ ବର୍ତ୍ତମାନ ପତନମୁଖୀ···ବର୍ତ୍ତମାନ ସାହିତ୍ୟ କ୍ଷେତ୍ରରେ ଯେଉଁ ଅଣବିକ ବୋମାର ଆଦର ବଢ଼ିଛି, ତାହା ଅତୀତ ବର୍ତ୍ତମାନ ଏବଂ ଭବିଷ୍ୟତର ସାହିତ୍ୟକୁ ସମ୍ପୂର୍ଣ୍ଣ ଧ୍ୱଂସ କରିବା ଆଶ୍ଚର୍ଯ୍ୟ ନୁହେଁ ···କ୍ରମାନ୍ୱୟରେ ଗଳ୍ପ ଉପନ୍ୟାସ, ଏକାଙ୍କିକା ଓ ନାଟକ ଇତ୍ୟାଦି ମଧ୍ୟରେ ମଧ୍ୟରେ ଏଗୁଡ଼ିକର ଗତିର ବିଶ୍ଳେଷଣ କରାଯିବ ।

## ଆଧୁନିକ ପତ୍ର ପତ୍ରିକା ଓ ସମାଜ—

ସାହିତ୍ୟ ଏବଂ ସମାଜ ଉଭୟଙ୍କର ଉଭୟଙ୍କ ପ୍ରତି କର୍ତ୍ତବ୍ୟ ଅଛି । ଏ ଦେଶର ପତ୍ର ପତ୍ରିକା ପ୍ରତି ଦୃଷ୍ଟି ଦେଲେ ଜଣାଯାଏ "ଟିକେ ଚଢ଼େଇ ଟିକିଏ ପାଣିରେ ବୁଡ଼ି ମରଇ" ଅର୍ଥାତ୍ ଏମାନଙ୍କର ଜୀବନକାଳ ଅତି ଅଳ୍ପ । ମନେହୁଏ ଆର୍ଥିକ ଅନାଟନ ଯେ ପ୍ରଧାନ ଅନ୍ତରାୟ ତା ନୁହେଁ, ପଠନ ମନବୃତ୍ତିର ମଧ୍ୟ ସଂପୂର୍ଣ୍ଣ ଅଭାବ ବିଶେଷ ମାତ୍ରାରେ ଅନୁଭୂତ ହୁଏ । କେବଳ କେତେକ ବ୍ୟକ୍ତିଗତ ସହଯୋଗରେ ପତ୍ରିକା ମୁଣ୍ଡ ଟେକି ଉଠେ ସିନା, ଉତ୍ସାହର ଅଭାବରେ ଧୀରେ ଅକାଳରେ ମୃତ୍ୟୁ ଘଟେ । ଅବଶ୍ୟ ପତ୍ର ପତ୍ରିକାର ସଂପାଦକମାନଙ୍କର ଦାୟିତ୍ୱ ସଂପାଦନରେ ତ୍ରୁଟି ରହିଗଲେ ପତ୍ରିକା ଅଚିରେ ଅନେ ମରିଯିବା ସ୍ୱାଭାବିକ । ବାତାବରଣ ଏ ମାଟିର ପରିବେଶ ଏବଂ ରୁଚି ଅନୁସାରେ ନିଜକୁ ପ୍ରସ୍ତୁତ କରିବା ଉଚିତ—ପତ୍ରିକାକୁ ଜନପ୍ରିୟ କରାଇବା ସଂପାଦକଙ୍କର ସଂପାଦନା ଉପରେ ଅନେକାଂଶରେ ନିର୍ଭର କରେ—ତାହା ବୋଲି ଯେ କେହି କହନ୍ତି କେବଳ ପାଠକଙ୍କ ମନରେ ସାହିତ୍ୟର ମୂଲ୍ୟ ବୋଧ ବଳି ଦେଇ ସାହିତ୍ୟର ମୌଳିକ ତାକୁ ଆଘାତ ଦେବାକୁ ବା କ୍ଷତ ବିକ୍ଷତ କରିବାକୁ । ସବଳ ଅଥଚ ଗମ୍ଭୀର ବିଷୟ ବସ୍ତୁକୁ ଏପରି ସୁନ୍ଦର ଭାବେ ସଜାଇବାକୁ ପଡ଼ିବ ଯେମିତି ସବୁ ଶ୍ରେଣୀର ବା ସବୁ ମନବୃତ୍ତିର ପାଠକ

ପାଠିକାଙ୍କୁ ତାହା ଖାଦ୍ୟ ଯୋଗାଇ ପାରବ । ନାଁ ନ ହେଲେ ସାହିତ୍ୟ ମୂର୍ତ୍ତି ବିକାଶ ହେବନି ବା ପତ୍ରିକା ବଞ୍ଚି ପାରିବା ସମ୍ଭବ ହେବନି । ଏ ଦେଶରେ 'ପତ୍ରିକା ବା ଯେ କୌଣସି ବହି ଶନା ମୂଲ୍ୟରେ ପାଇବାର ମନବୃତ୍ତି ଅନେକ କ୍ଷେତ୍ରରେ ଦେଖାଯାଏ, ତାହା ସାହିତ୍ୟ ପ୍ରତି ଏକ ଅସମ୍ମାନ ସୂଚକ······ ।

**ସାହିତ୍ୟ ଏକାଡେମୀ—**

କହିଲେ ଅତ୍ୟୁକ୍ତି ହେବନାହିଁ ଯେ ରଜା ରାଜୁଡ଼ାଙ୍କ ପରେ କଳାକୁ ବଞ୍ଚାଇ ରଖିବା ଲାଗି ସାହିତ୍ୟ ଏକାଡେମୀର ପ୍ରତିଷ୍ଠା ସମ୍ଭବ ହୋଇଛି । ଏହାର ଉପାଦେୟତା ବହୁବିଧ ବୋଲି ଆମର ଆଶା ଓ କଳ୍ପନାରେ ଅଛି । ଅନେକ ସଂଗୀତ, ନୃତ୍ୟ, କଳା ଏବଂ ସାହିତ୍ୟକୁ ଆଲୋଚନା କରିବାକୁ ଯାଇ ଆକ୍ଷେପ କରନ୍ତି ସାହିତ୍ୟ ଏକାଡେମୀ ବାସ୍ତବରେ କ'ଣ କରୁଛି ? ଏଇ ପ୍ରଶ୍ନ ଅନେକଙ୍କ ମନରେ ଜନ୍ମ ନେଲାଣି । ଅବଶ୍ୟ ଏକାଡେମୀର ଏଇ ବାଲ୍ୟ ଅବସ୍ଥାରେ ହଠାତ୍ ସର୍ବସାଧାରଣଙ୍କ ମନକୁ ତୃପ୍ତି ଦେବା- ଭଳି କର୍ତ୍ତବ୍ୟ ସମ୍ପାଦନ ସମ୍ଭବ ନୁହେଁ·· କିନ୍ତୁ ଆମର ବିଶ୍ୱାସ ଏକାଡେମୀ ସଦା ସର୍ବଦା ଏହିଭଳି ଆପଣା ପ୍ରସ୍ଥତିରେ ବ୍ୟସ୍ତ ରହି ନୀରବ ବା ନିଷ୍କ୍ରିୟରୂପେ ପ୍ରତେକଙ୍କ ସମ୍ମୁଖରେ ଠିଆ ହେବନି···ସେହିଭଳି ଏଠାରେ ମଧ୍ୟ ପ୍ରତି ପର୍ଯ୍ୟାୟର ସ୍ୱତନ୍ତ୍ର ଏକାଡେମୀ ସ୍ଥାପିତ ହେବା ଉଚିତ··· ଲଳିତ କଳା ଏକାଡେମୀ ସେମାନଙ୍କ ମଧ୍ୟରୁ ଅନ୍ୟତମ ।

**ସଂକ୍ଷେପରେ ସାହିତ୍ୟ**

କୌଣସି ଭାଷାର ପରିଧି ମଧ୍ୟରେ ସାହିତ୍ୟ ସୀମିତ ହେବା ପୃଥିବୀ ପକ୍ଷେ ଅମଙ୍ଗଳ । ପ୍ରତି ଭାଷାର ଲେଖକ ଲେଖିକାଙ୍କ ମଧ୍ୟରେ ପାରସ୍ପରିକ ସହଯୋଗମୂଳକ ମନୋଭାବ ଏ ପୃଥିବୀର ସାର୍ବଜନୀନ ଶୁଭ ଦୃଷ୍ଟିରୁ ଏକାନ୍ତ ବାଞ୍ଛନୀୟ । ସାହିତ୍ୟ ଓ ଜୀବନ ପରସ୍ପର ଅଙ୍ଗୀୟ—ଜୀବନ କ୍ଷଣିକ ସାହିତ୍ୟ ଚିରନ୍ତନ । କିନ୍ତୁ କ୍ଷଣିକରୁ ଚିରନ୍ତନର ମୁକ୍ତି ଏବଂ ଚିରନ୍ତନକୁ କ୍ଷଣିକର ସମ୍ଭବ । ସାହିତ୍ୟ ଯଦିଓ ଜୀବନର ନିଖୁଣ ପ୍ରତିଛବି ଓ ବିଶ୍ଳେଷଣ—ତଥାପି ସାହିତ୍ୟ ନିଜର ପ୍ରତିକ୍ରିୟାରେ ସଂକୀର୍ଣ୍ଣ ବ୍ୟକ୍ତି ମନବୃତ୍ତିକୁ ଅବରୋଧ କରି ନୈତିକ ମାନଦଣ୍ଡକୁ ବଳିଷ୍ଠ କରେ ଏବଂ ପୃଥିବୀର ପରିବାରକୁ ସୁସଂଘଟିତ, ସୁଶୃଙ୍ଖଳ, ସୁଶ୍ରୀ ଏବଂ ସମୃଦ୍ଧି ସଂପର୍ଣ୍ଣ କରିପାରେ । ସାହିତ୍ୟ ଏବଂ ସାହିତ୍ୟିକଙ୍କର ସଂପର୍କ ଏ ପୃଥିବୀ ପରିବାର ସହିତ ଯେତେ ଜୀବନ୍ତ ହେବ ପ୍ରତି ବ୍ୟକ୍ତି- ବିଶେଷର ଅମର ଲାଗି ଆନ୍ତରିକତା ଏବଂ ମାୟା ମମତା ଇତ୍ୟାଦି ସେତେ ନିବିଡ଼ ହେବ ।

ବଞ୍ଚିବା ଲାଗି ଏବଂ ଜୀବନକୁ ସୁନ୍ଦର କରିବା ଲାଗି ସାହିତ୍ୟର ଦାୟିତ୍ୱ ଏବଂ ସହଯୋଗ ଯେ କେତେ ଗୁରୁତ୍ୱପୂର୍ଣ୍ଣ ତାହା କେବଳ ଗଭୀର ମନସ୍ତାତ୍ତ୍ୱିକ ଅଧ୍ୟବସାୟ ବଳରେ ଉପଲବ୍ଧି କରି ହୁଏ । ସାର୍ବଜନୀନ ଶାନ୍ତି ଲାଗି ଏ ପୃଥିବୀର ରାଜପଥ ଉପରେ ସାହିତ୍ୟ ଏକ ଶୁଭ୍ର ଯେ ସ୍ୱରୂପ··· ସାହିତ୍ୟକୁ କେହି ଅବହେଳା କରି ସାହିତ୍ୟ ପ୍ରତି ଅନାସକ୍ତି ହେଲେବି ସେ ଛିଲେ ନିଜ କର୍ତ୍ତବ୍ୟ ପଥରୁ ବିଚ୍ୟୁତ ହୁଏନି—ଠିକ୍ ମା ଭଳି ମରି ସହି ପାରେ । ଶେଫାଳି ମେହେର ସାହିତ୍ୟର ପ୍ରତିନିଧିତ୍ୱ କରିବ । ଶେଫାଳି ହେଉ ସୁନ୍ଦର ସୃଷ୍ଟିର ପ୍ରତୀକ ।

**ଆମ ପତାକା—**

ଜାନୁୟାରୀ ଛବିଶ ଏବଂ ଅଗଷ୍ଟ ପନ୍ଦର ଉଭୟର ଉପଲକ୍ଷେ ଆମ ଜାତୀୟ ପତାକା ତଳେ ବେସନାବାଲିକା, ପୋଲିସ କର୍ମୀଙ୍କ ଏବଂ ଏନ୍. ସି. ସି. ଇତ୍ୟାଦିର

ଯେଉଁ ଗମ୍ଭୀର ଆଡ଼ମ୍ବର ଦେଖାଯାଏ ତାହା ଜାତୀୟ ପତାକା ଏବଂ ଜାତୀୟ ପୂଜ୍ୟପିତାଙ୍କ ବ୍ୟକ୍ତିତ୍ୱକୁ କ୍ଷୁଣ୍ଣ କରୁଛି । ଗାନ୍ଧୀଙ୍କ ହାତରେ ଗୁଳା ବାରୁଦ ବା ବନ୍ଧୁକ ଯେପରି ଅଶୋଭନୀୟ ମନେ ହେବ—ଜାତୀୟ ପତାକା ତଳେ ସେ ସବୁର ଉପସ୍ଥିତି ଠିକ୍ ସେହିଭଳି ଅନୁଭୂତ ହେଉଛି । ଯେଉଁ ପତାକାକୁ ଆମେ ବନ୍ଧୁକ ବା ସେନା-ବାହିନୀର ଗର୍ବରେ ପାଇନୁ, ସେ ପତାକା ତଳେ ସେନା ବା କୌଣସି ଅସ୍ତ୍ର ଶସ୍ତ୍ର ରଖିବା ପାପ । ଆଜି ମଧ୍ୟ ଉତ୍ସବ ପ୍ରତି ବ୍ୟକ୍ତି ସମ୍ୟକ ଭାବରେ ଉତ୍ସବକୁ ପାଳନ କରିବାର ଅଧିକାରରୁ ବଞ୍ଚିତ ହେଉଛନ୍ତି—ମନ ମନ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି ହେଉଛି । ବରଂ ଜାନୁୟାରୀ ଛବିଶ ଏବଂ ଅଗଷ୍ଟ ପନ୍ଦରକୁ ଆମର ଦୁଇଟି ଜାତୀୟ ଧର୍ମୀ ଉତ୍ସବ ବା ପର୍ବ ଦିବସରେ ପ୍ରତି ଘରେ ଘରେ ନିଜ ନିଜର ସାମର୍ଥ୍ୟକୁ ନେଇ ପାଳନ କଲେ ଗଲେ ପତାକାର ମହାତ୍ମ୍ୟ ଚିର ଅକ୍ଷୁଣ୍ଣ ରହନ୍ତା ।

## ଶେଫାଳି—

ଶେଫାଳିର ଦୃଷ୍ଟିକୋଣ କୌଣସି ମାନଚିତ୍ର ପରି ବାହା ସମ୍ମୁଖରେ ବାଢ଼ିବା ସମ୍ଭବ ନୁହେଁ । ନିଜ କର୍ତ୍ତବ୍ୟରେ କେବଳ ଶେଫାଳି ମେ ପରିଚୟ ଦେଇପାରେ··· ଶେଫାଳିର ଏହି ପ୍ରଥମ ପରିଚୟ ଯେ ତା ମନ ତଳର ସକଳ ଦୃଷ୍ଟି କୋଣର ସୂଚୀପତ୍ର ବା ନମୂନା ତା ନୁହେଁ ।

ଶେଫାଳିର ଅଙ୍ଗ ଗଠନ ଲାଗି ଯେଉଁ ଅସୀମ ସହଯୋଗ ଓ ଆନ୍ତରିକତା ଶେଫାଳିର ପ୍ରିୟ ଶ୍ରେଣୀର ଶିଳ୍ପୀଙ୍କଠାରୁ ପାଇଛୁ ତାହା ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦିଏ । ସେଥିଲାଗି ଆମେ ପ୍ରତ୍ୟେକଙ୍କୁ ସୌହାର୍ଦ୍ଦ୍ୟ ଜ୍ଞାପନ କରୁଚୁ । ଆମର ବିଶ୍ୱାସ, ଶେଫାଳିର ବିଳମ୍ବ ଜନିତ ଅପ୍ରକାଶରେ ସେ ପ୍ରତ୍ୟେକଙ୍କ ନିକଟରେ କ୍ଷମଣୀୟ ହେବ·· ସ୍ଥାନାଭାବ ହେତୁ କେତେକ ପ୍ରିୟ ଲେଖକ ଲେଖିକାଙ୍କ ଲେଖା ପ୍ରକାଶ ସମ୍ଭବ ହୋଇନି, ·ସେଥିଲାଗି ଶେଫାଳି କ୍ଷମାଭିକ୍ଷା କରୁଛି । ମନୋନୀତ ଲେଖାଗୁଡ଼ିକ ପର ସଂଖ୍ୟା-ମାନଙ୍କରେ କ୍ରମଶଃ ପ୍ରକାଶ ପାଇବ । ଶେଫାଳିର ସାଜ ସଜାରେ ଅନେକ ଜାଗାରେ ତ୍ରୁଟି ରହି ଯାଇଛି ଏବଂ କେତେକ ନୂତନ ଶିଶୁ ଶିଳ୍ପୀଙ୍କୁ ଉତ୍ସାହ ଦୃଷ୍ଟିରୁ କେତୋଟି ଛବି ଭିତର ପର୍ଯ୍ୟାୟରେ ସ୍ଥାନ ଦେଇଛୁ—ତାହା ହୁଏତ ଲେଖା ସହିତ ଅନୁସଙ୍ଗୀକ ହୋଇ ନ ପାରେ । ତେଣୁ ଆମର ସହଯୋଗୀ ଲେଖକ ଲେଖିକା ଏବଂ ଶିଳ୍ପୀବୃନ୍ଦ ଏଥିରେ ବିଶେଷ କିଛି ମନେ ନ କରିବାକୁ ଅନୁରୋଧ ।

କରଣଗଡ଼ କ୍ଲବର ଅନେକ ସଦସ୍ୟ ଆପ୍ରାଣ ଚେଷ୍ଟା କରି ପତ୍ରିକାଟିର ଭିତ୍ତି ସ୍ଥାପନ କରିଛନ୍ତି, ସେମାନଙ୍କ ନିକଟରେ ଚିରଋଣୀ··· ଶେଫାଳି । ଗାଁ ଗହଳର ଏକ କ୍ଲବ ଆନୁକୂଲ୍ୟରେ ଓଡ଼ିଶାରେ ଏ ହେଉଛି ପ୍ରଥମ ପ୍ରଚେଷ୍ଟା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶେଷରେ ଶେଫାଳି ପ୍ରତ୍ୟେକଙ୍କ ଲାଗି ଅନ୍ତର ପୂଜାପାର୍ବଣରେ ଶୁଭେଚ୍ଛା ବାଢ଼ିବା ସଙ୍ଗେ ସଙ୍ଗେ ଆଶାକରେ ବର୍ତ୍ତମାନର ଆନ୍ତରିକତା ଚିରଦିନ ଅକ୍ଷୁଣ୍ଣ ରହିବ । ପ୍ରତି ମୁହୂର୍ତ୍ତରେ ଶେଫାଳିକୁ ପ୍ରତ୍ୟେକ ସ୍ନେହାଦର ଦେଇ ଯେ ପାଖେ ଠିଆହେବ ଏ ଭରସା ଅଛି ଶେଫାଳିର ପ୍ରତି ଲେଖକ ଲେଖିକା ଏବଂ ପାଠକ ପାଠିକାଙ୍କଠାରେ······

* ବିବାହ ଯୌତୁକ ପ୍ରଥା ଏବଂ ସାହିତ୍ୟଙ୍କ ସାମାଜିକ କର୍ତ୍ତବ୍ୟ ପରବର୍ତ୍ତୀ ସଂପାଦକୀୟର ଆକର୍ଷଣ ।

ସଂପାଦକ